ସରଳ

# ପରିବେଶ ବୋଧ



ଭାଗୀରଥି ମହାସୁଆର

# ମୁଖବନ୍ଧ

କଥାରେ ଅଛି, ''ଯାହା ନୋହିବ ବାଳକାଳେ, ତାହା ନୋହିବ ପାଚିଲା ବାଳେ ।'' ମନୋବୈଜ୍ଞାନିକମାନଙ୍କ ମତରେ ବାଲ୍ୟାବସ୍ଥାରୁ ମନୁଷ୍ୟର ପ୍ରକୃତ ବ୍ୟକ୍ତିତ୍ୱ, ମୂଲ୍ୟବୋଧ ଓ ଚେତନଶୀଳତାର ଭିତ୍ତି ସ୍ଥାପିତ ହୋଇଥାଏ । ତେଣୁ ପରିବେଶ ପ୍ରତି ସଚେତନତା ଓ ଆକର୍ଷଣ ପିଲାଦିନରୁ ସୃଷ୍ଟି କରିଥିଲେ ମଣିଷଟି ବଡ଼ ହେବା ପରେ ପରିବେଶ ସୁରକ୍ଷା ପ୍ରତି ଆଗ୍ରହୀ ଓ ଚେଷ୍ଟିତ ହୋଇପାରିବ ।

ଆଜି ଆମର ସମସ୍ତ ଉନ୍ନୟନମୂଳକ କାର୍ଯ୍ୟ ଏପରିଭାବେ ସମ୍ପାଦନ କରିବାକୁ ହେବ ଯେ, ଯଦ୍ୱାରା ପରିବେଶର କୌଣସି ବିପରୀତ ପ୍ରତିକ୍ରିୟାଜନିତ କ୍ଷତି ନ ହୁଏ । ତା' ନ ହେଲେ ତଥାକଥିତ ଉନ୍ନୟନ ସ୍ଥାୟୀ ଏବଂ ସହନଯୋଗ୍ୟ ହେବ ନାହିଁ । ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ ଜାଣିଛି ଯେ, ଆଜିର ବୟସ୍କ ଲୋକେ, ବିଶେଷତଃ ଶିକ୍ଷିତ ବୟସ୍କ ଲୋକେ, ଏପରି ଚିନ୍ତାଧାରା ରଖିପାରୁ ନାହାନ୍ତି । ତେଣୁ ପରିବେଶ ସୁରକ୍ଷା ବିଷୟରେ ସମସ୍ତେ ଯାହାକିଛି କହନ୍ତୁ ପଛକେ, କାର୍ଯ୍ୟକ୍ଷେତ୍ରରେ ଉଚିତ ଆନ୍ତରିକତା ପରିଲକ୍ଷିତ ହେଉ ନାହିଁ ।

ଏଣୁ ଶୈଶବରୁ ଭବିଷ୍ୟତ ବଂଶଧରଙ୍କର ପରିବେଶ ସଚେତନତା ସୃଷ୍ଟି ନିମନ୍ତେ ଉଦ୍ୟମ ଆବଶ୍ୟକ । ଶ୍ରୀ ଭାଗୀରଥି ମହାସୁଆର ଏ ଦିଗରେ ଚେଷ୍ଟା କରିଥିବାରୁ ପ୍ରଶଂସନୀୟ ।

ରେବତୀ ଚରଣ ଦାସ
ଅଧ୍ୟକ୍ଷ,
ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼,
ଓଡ଼ିଶା, ଭୁବନେଶ୍ୱର

# ଭୂମିକା

ବୁଝିପାରିବା ଭଳି ବିଷୟଟିଏ ଦେଖିଲେ ରୁଚିଭେଦ ନ ରଖି ପଢ଼ିବସିବା ଅଭ୍ୟାସଟି ପିଲାଦିନରୁ ଥିଲା । ବିଭିନ୍ନ ପତ୍ରପତ୍ରିକା ପାଇଁ ଲେଖାଲେଖି କରିବାର ସଉକ ଆସିଲା ଯୁବାବସ୍ଥାର ଶେଷ ପାହାଚରେ । କିନ୍ତୁ ଏହି ପଢ଼ିବା ଓ ଲେଖିବାକୁ ପାରିବେଶିକ ସମସ୍ୟାମାନଙ୍କ ପାଇଁ ଉପଯୋଗ କରିବାର ପ୍ରେରଣା ପାଇଥିଲି ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ର ଅଧ୍ୟକ୍ଷ ପ୍ରଫେସର୍ ରେବତୀ ଚରଣ ଦାସଙ୍କ ନିକଟରୁ । ସେ ପ୍ରେରଣାରେ ସକ୍ରିୟତା, ପ୍ରଶିକ୍ଷଣ ଓ ପୃଷ୍ଠପୋଷକତା ଥିଲା । ଏଣୁ ସେ ବିଷୟରେ ଲେଖନୀ ଚାଳନା ପାଇଁ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇପାରିଛି । ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ର କ୍ଷୁଦ୍ର ଅଥଚ ମହାର୍ଘ ପାଠାଗାରଟି ଏଥିପାଇଁ ତଥ୍ୟ, ବିଷୟବସ୍ତୁ ଓ ଚିନ୍ତା ଯୋଗାଇପାରିଛି ।

ଅଧ୍ୟୟନରୁ ହୃଦ୍‌ବୋଧ ହୋଇଛି ଯେ, ପାରିବେଶିକ ଆଶା, ଆଶଙ୍କା ଓ ସମ୍ଭାବନାଗୁଡ଼ିକ ବାସ୍ତବ ରୂପ ନେବେ ଆମ ଜୀବନକାଳ ପରେ । ଏକଥା ଜାଣିବା ପରେ ଆମ ପୁରୁଷର ଲୋକେ ଭବିଷ୍ୟତର କଲ୍ୟାଣକାରୀ ପରିବେଶ ଗଠନ ନିମନ୍ତେ ନିଜର ସ୍ୱାର୍ଥ, ଅଭ୍ୟାସ, ଚରିତ୍ର ବା ଲକ୍ଷ୍ୟ ସହିତ ସାଲିସ୍ କରିବେ, ଏ ଭରସା ହେଉ ନାହିଁ । ଏଣୁ ଯେଉଁମାନେ ୨୦୫୦ ମସିହା ବା ତା' ପରର ଦୁନିଆ ଦେଖିବେ, ସେମାନେ ମୂଳରୁ ପରିବେଶ-ସଚେତନ ହେଲେ, ନିଜକୁ ପରିବେଶର ସ୍ୱାର୍ଥ ଅନୁସାରେ ପ୍ରସ୍ତୁତ କରିବେ ଏବଂ ସାଂସାରିକ ଘଟଣାବଳୀକୁ ପରିବେଶର ସ୍ୱାର୍ଥ ପାଇଁ ଟାଣି ନେବା ପାଇଁ ନିଜ ହିତ ଦୃଷ୍ଟିରୁ ଆପ୍ରାଣ ଚେଷ୍ଟା କରିବେ । ଏ କଥା ବୁଝିସାରିବା ପରେ ଶିଶୁମାନଙ୍କ ପାଇଁ ପାରିବେଶିକ ପାଠ୍ୟ ସୃଷ୍ଟି କରିବାର ଇଚ୍ଛା ଜାଗ୍ରତ ହୋଇଥିଲା । ସେଥିରୁ ଏ ବହିର ଜନ୍ମ ।

ବହିଟିର ଉଦ୍ଦେଶ୍ୟ ସୀମିତ । ପଞ୍ଚମ ଶ୍ରେଣୀ ଡେଇଁ ନ ଥିବା ପିଲାଟିଏ ପରିବେଶ ବିଷୟରେ ଯେତିକି ଧାରଣା ଆବଶ୍ୟକ କରେ ଓ ଯାହା ବୁଝାଇଲେ ବୁଝିପାରିବ, ତାହାହିଁ ଏ ବହିର ସୀମା । ତେଣୁ ଏହା ନବସାକ୍ଷର ପ୍ରୌଢ଼ମାନଙ୍କ ସ୍ୱାଧୀନ ପଠନ ପାଇଁ ମଧ୍ୟ ଉପଯୁକ୍ତ । ସ୍ଥଳବିଶେଷରେ ପାଠ୍ୟକୁ ସଂକ୍ଷିପ୍ତ କରିଦିଆଯାଇଛି, କେବଳ କ୍ଲିଷ୍ଟ ଶବ୍ଦ, ଜଟିଳ ତତ୍ତ୍ୱ ଓ ଗମ୍ଭୀର ଆଲୋଚନାଗୁଡ଼ିକୁ ବାଦ୍ ଦେବାକୁ । ସେ ସବୁ ଯଦି ସମ୍ଭବ ହୁଏ, ଏହି ବହିର ଉଚ୍ଚତର ସୃଷ୍ଟିରେ ସ୍ଥାନ ପାଇବ ।

ପ୍ରଚ୍ଛଦପଟ ସମେତ ଏ ବହିର ସମସ୍ତ ଚିତ୍ର ଅଙ୍କନ କରିଛନ୍ତି ମୋ ନିର୍ଦ୍ଦେଶନାରେ ଦୁଇଜଣ ଶିଶୁ ଚିତ୍ରକର ରାଜନାରାୟଣ ଓ ଶିବନାରାୟଣ । ସେମାନେ ମୋର ସନ୍ତାନ ଓ ପାଣ୍ଡୁଲିପିର ପ୍ରଥମ ପାଠକ ।

ଯେଉଁମାନଙ୍କ ପାଇଁ ଏ ବହିଟି ଉଦ୍ଦିଷ୍ଟ, ସେମାନଙ୍କ ପାଖରେ ଯଦି ପହଞ୍ଚିପାରେ, ତେବେ ଆତ୍ମସନ୍ତୋଷ ଆସିବ ।

ବିନୀତ

ଲେଖକ

# ସୂଚୀପତ୍ର

# ପରିବେଶ କ'ଣ ?

ଆଜିକାଲି ପରିବେଶ ବିଷୟରେ ବହୁତ ଆଲୋଚନା ହେଉଛି । ଏ କଥାଟି କ'ଣ ତାହା ଜାଣିବା ଦରକାର । ମୋଟାମୋଟି ବୁଝିଲେ ଆମକୁ ଘେରିଥିବା ସବୁକିଛି ଆମର ପରିବେଶ । ମାଟି, ପାଣି, ପବନ, ଆକାଶ, ପଶୁପକ୍ଷୀ ଓ ଗଛଲତା ସମସ୍ତେ ଆମର ପରିବେଶ । ଶିଉଳିଠାରୁ ଶାଳଗଛଯାଏ ସବୁ ଗଛ ଓ ଜିଆଠାରୁ ହାତୀଯାଏ ସବୁ ଜୀବ ଆମର ପରିବେଶ । ମଣିଷର ବଞ୍ଚିବା ପାଇଁ ଏ ସବୁଗୁଡ଼ିକ ଦରକାରୀ ପରିମାଣରେ ରହିବା ଉଚିତ । ଏଗୁଡ଼ିକର ପରିମାଣ କମ୍ ବେଶୀ ହେଲେ ମଣିଷର ବହୁ ଅସୁବିଧା ହୋଇଥାଏ ।

## ଆଜିର ପରିବେଶ

ଧନୀ ଓ ଗରିବ ସବୁ ଦେଶରେ ଆଜି ଗୋଟିଏ ଭାବନା ପଡ଼ିଛି । କାରଣ ପରିବେଶ କ୍ଷୟ ହୋଇଯାଉଛି । ଏହାର ଫଳଗୁଡ଼ିକ ଭାବିଲେ ଭୟ ଲାଗୁଛି । ସେଗୁଡ଼ିକ ଆମ ପାଇଁ ବିପଦ ଓ ଆମେ ହିଁ ସେସବୁ ଘଟିବା ପାଇଁ ଦାୟୀ । ତେଣୁ ବୁଝିବା ଦରକାର ଯେ ପରିବେଶ ଆମକୁ କିପରି ପାଳନ କରେ ଏବଂ ତାହା କାହିଁକି ଓ କିପରି କ୍ଷୟ ହୋଇଯାଉଛି ।

ମାଟି ଆମକୁ ଫସଲ ଦିଏ । ତା' ତଳୁ ଆମେ ଅନେକ ଦରକାରୀ ଧାତୁ, ପାଣି, ଜାଳେଣି ତେଲ ଓ କୋଇଲା ପାଉ । ଦିନକୁ ଦିନ ମାଟିର ଗୁଣ କମିଯାଉଛି । ତା' ତଳୁ ଅନେକ ଜିନିଷ ଖୋଳା ହୋଇ ବ୍ୟବହାର ହୋଇସାରିଲାଣି । ମାଟି ଉପରେ ପାଣି ମିଳିବା ପାଇଁ ବର୍ଷା ଦରକାର । ଆଗ ଅପେକ୍ଷା ବର୍ତ୍ତମାନ ତାହା ଅଳ୍ପ ହୋଇଯାଇଛି । ବର୍ଷା ପାଣିକୁ ରଖି ହେଉ ନ ଥିବାରୁ ସେଥିରୁ ବେଶୀ ଭାଗ ସମୁଦ୍ରକୁ ଚାଲିଯାଉଛି । ଯାହା ରହୁଛି, ସେଥିରୁ କିଛି ଅପରିଷ୍କାର ଓ ଅଦରକାରୀ ହୋଇଯାଉଛି । ଏହାକୁ 'ପ୍ରଦୂଷଣ' କୁହାଯାଏ । ପବନ ମଧ୍ୟ ଦୂଷିତ ହୋଇଯାଉଛି । ଗାଡ଼ିମଟର ଓ ମାଇକ୍ର ଶବ୍ଦ ଆମ ଶରୀରର କ୍ଷତି କରୁଛି ।

ପ୍ରାୟ ସବୁ ପଶୁପକ୍ଷୀ ଆମର ଉପକାରୀ । ଜିଆ ମାଟି ନରମ କରେ । ଚଢ଼େଇ ପୋକଜୋକ ଖାଇଦିଏ । କାଉ, ଶାଗୁଣା ଆଦି ପଚା ମଇଳା ଜିନିଷ ଖାଇଯାଆନ୍ତି । ସେ ଜୀବଗୁଡ଼ିକରୁ କେତେକ ଆମର ଖାଇବାରେ ଦରକାର



ଆଜିର ପରିବେଶ

ହୁଅନ୍ତି । ବାଘ, ଭାଲୁଙ୍କ ଭୟରେ ବଣ କଟା ହୋଇପାରେ ନାହିଁ । ମାଛକୁ ଆମେ ଖାଉ ଓ ସେ ପାଣିକୁ ସଫା ରଖେ । ଏମାନେ କେତେ ଲୋପ

ହେଲେଣି । ତେଣୁ ମାଟି ଓ ପାଣି ଦୂଷିତ ହେବା ସହଜ ହେଉଛି । ବଣଜଙ୍ଗଲ କମିଯିବାରୁ ମାଟି ଧୋଇଯାଉଛି । ବର୍ଷା କମିଯାଉଛି । ସେ ସବୁ ଠିକ୍ ପରିମାଣରେ ରହିଲେ ଆମେ ସୁଖସୁବିଧା ସହ ବଞ୍ଚିବା । ସେଗୁଡ଼ିକର ଅଧିକ କ୍ଷତି ହେଲେ ମଣିଷର ବଞ୍ଚିବା ମଧ୍ୟ କଷ୍ଟକର ହୋଇଯିବ ।

ଆମେ ଭାବୁଥିଲେ ମାଟିକୁ ସାର ଦେଇ ବଳୁଆ କରିଦେବା । ଔଷଧ ପକାଇ ରୋଗ-ପୋକ ଦାଉରୁ ଫସଲ ରକ୍ଷା କରିବା । ଏମିତି କରୁ କରୁ ମାଟି, ପାଣି ଓ ଆମ ଦେହରେ କିଛି ବିଷ ଜମା ହୋଇଗଲାଣି । ରୋଗ ସବୁ ବଢ଼ିଗଲେଣି । ଗାଈ କ୍ଷୀର ଓ ମା' କ୍ଷୀରରେ ଡି.ଡି.ଟି.ର ଅଂଶ ରହୁଥିବା ଜଣାପଡ଼ିଲାଣି ।

ଏସବୁ କଥାରେ ସାରା ପୃଥିବୀ ବିଚଳିତ । ପ୍ରାୟ କୋଡ଼ିଏ ବର୍ଷ ହେଲା ସବୁ ଦେଶର ସରକାର ପ୍ରଦୂଷଣ ନ ହେବା ଓ ପରିବେଶ ସଠିକ୍ ରହିବା ବିଷୟରେ ଚିନ୍ତା କରୁଛନ୍ତି ଓ କାମ କରୁଛନ୍ତି ।

## ପ୍ରଦୂଷଣର ପ୍ରଭାବ

ଲୋକସଂଖ୍ୟା ବଢ଼ୁଛି । ତାଙ୍କ ଦରକାରୀ ଜିନିଷ ସବୁ ବେଶୀ ବେଶୀ ଦରକାର ହେଉଛି । କଳ, କାରଖାନା, ସହର ଓ ଯାନବାହନ ବଢ଼ୁଛି । ଏସବୁ ପାଇଁ ବଣ କଟା ହେଉଛି । ଲୋକମାନେ, ପାଳିତ ପଶୁମାନେ, କଳକାରଖାନା ଓ ଗାଡ଼ିମଟର ଆଦି ପାଣି ଓ ପବନକୁ ପ୍ରଦୂଷିତ କରୁଛନ୍ତି । ବର୍ଷାପାଣିରେ ଏସିଡ୍ ଭାଗ ବେଶୀ ହୋଇ ଜଙ୍ଗଲ ଓ କ୍ଷେତ ଉଜୁଡୁଛି । କେତେକ ଜାଗାରେ ମାଛ ମରିଯାଉଛନ୍ତି କିମ୍ୱା ରୋଗା ହୋଇଯାଉଛନ୍ତି ।

ଇଥିଓପିଆ ଗୋଟିଏ ଗରିବ ଦେଶ । ସେଠାରେ ବହୁତ ବଣ ଥିଲା । ବଣ କଟା ହୋଇଯିବାରୁ ବର୍ଷା ହେଲା ନାହିଁ । ଚାଷ ହେଲା ନାହିଁ । ପିଇବା ପାଣି ମିଳିଲା ନାହିଁ । ଲୋକେ ପୋକମାଛି ପରି ମଲେ । କୁହାଯାଇଛି ଯେ ଗୋଟିଏ ଦେଶରେ ଅତି କମ୍‌ରେ ତିନି ଭାଗରୁ ଭାଗେ ଜାଗାରେ ଜଙ୍ଗଲ ରହିବା କଥା । ଆମ ଦେଶରେ ଏହା ନ' ଭାଗରୁ ଏକ ଭାଗ ରହିଲାଣି ।

ତେଣୁ ବର୍ଷା ଆଗ ଅପେକ୍ଷା ଅଳ୍ପ ହେଉଛି । ଯେତିକି ହେଉଛି, ସଠିକ୍ ଯୋଜନା ନ ଥିବାରୁ ସେଥିରେ ମାଟି ଧୋଇଯାଉଛି, ପାଣିତକ ସମୁଦ୍ରକୁ ଚାଲିଯାଉଛି । ଏଣୁ ବଢ଼ି ହେଉଛି, ମରୁଡ଼ି ବି ହେଉଛି । ଘାସ ପଡ଼ିଆ ନଷ୍ଟ, ପୋଡୁଚାଷ, ଖଣିଖୋଳା, କଳକାରଖାନା ତିଆରି ଓ ନଦୀବନ୍ଧ ଯୋଜନା ସକାଶେ ବଣ, ମାଟି, ନଈ ଆଦି ସବୁକିଛି ନଷ୍ଟ ହେଉଛନ୍ତି । ଆବର୍ଜନା ବଢ଼ିଯାଉଛି । ପବନ ବିଷାକ୍ତ ହେଉଛି । ଲୋକଗହଳି ଥିବା ସହରରେ ପାଣି ଓ ପବନ ମଣିଷର ଉପଯୋଗୀ ରହିପାରୁ ନାହିଁ । ଆମର କଳକାରଖାନା ଆହୁରି ବଢ଼ିବା ଦରକାର । ତେଣୁ ଏ ସବୁକୁ ସାବଧାନ ରହିବାକୁ ହେବ ।

## ପ୍ରଦୂଷଣ କାହିଁକି ହୁଏ ?

ଗୋଟିଏ ବଡ଼ କାରଣ ହେଲା ଜନସଂଖ୍ୟା । ବେଶୀ ଲୋକଙ୍କର ବେଶୀ ଜିନିଷ ଦରକାର । ତେଣୁ ଦେଶରେ ଯାହା ଅଛି, ତାହା ବେଶୀ ଖର୍ଚ୍ଚ ହୁଏ । ବେଶୀ ଖର୍ଚ୍ଚରୁ ବେଶି ଅଳିଆ ବାହାରେ । ଗରିବୀ ଥିଲେ ଅଳିଆର ପରିମାଣ ବେଶୀ ହୁଏ । କାରଣ, ଲୋକେ କମ୍ ଖର୍ଚ୍ଚରେ ଚଳିବାକୁ ପରିବେଶ ମଧ୍ୟରୁ ମାଗଣା ଜିନିଷଗୁଡ଼ିକ ବେଶୀ ବ୍ୟବହାର କରନ୍ତି । ପରିବେଶକୁ ନଷ୍ଟ କରନ୍ତି ଓ ଦୂଷିତ କରନ୍ତି । ଏହା ନ କରି ସେମାନେ ଚଳିପାରିବେ ନାହିଁ । ଅସଜଡ଼ା ପରିବେଶକୁ ସଜାଡ଼ିବାକୁ ତାଙ୍କର ଉପାୟ ମଧ୍ୟ ନ ଥାଏ । ବେଶୀ ଲୋକଙ୍କର ଦରକାର ତୁଲାଇବାକୁ ଗରିବ ଦେଶଟିଏ ବହୁତ ଅର୍ଥ ଲୋଡ଼େ । ତେଣୁ ସବୁବେଳେ ପ୍ରଦୂଷଣ ରୋକିବାକୁ ଅର୍ଥ ଯୋଗାଇ ହୁଏ ନାହିଁ । ତେଣୁ ପ୍ରଦୂଷଣ ବଢ଼ିଚାଲେ । ଜଳ ଓ ବାୟୁ ପ୍ରଦୂଷିତ ହୋଇ ଜଙ୍ଗଲ, ବଣ-ଜୀବ ଓ ମାଛ କମିଯାଆନ୍ତି । ଫଳରେ ଦିନେ ଏପରି ହୋଇପାରେ ଯେ, ମଣିଷକୁ ରହିବା ବା ଖାଇବାର କୌଣସି ସୁବିଧା ମିଳିବ ନାହିଁ ।

ଏଥିରୁ ରକ୍ଷା ପାଇବାକୁ ଅନେକ ଦେଶ ମିଶି ଏକ ପରିବେଶ ସୁରକ୍ଷା ପାଣ୍ଠି ଗଢ଼ିବାକୁ ଚିନ୍ତା କଲେଣି । କାରଣ, ପ୍ରଦୂଷଣ ରୋକିବାକୁ ସାରା ପୃଥିବୀର ସହଯୋଗ ଲୋଡ଼ା ।

## ଲୋକେ କ'ଣ କରିବା ଦରକାର

ପରିବେଶ, ତା'ର ପ୍ରଦୂଷଣ ଓ ସେଥିରୁ ହେଉଥିବା କ୍ଷତି କଥା ସବୁ ଲୋକେ ଜାଣିପାରି ନାହାନ୍ତି । ବିଦେଶରେ ଏ ବିଷୟରେ ଲୋକେ ଅଧିକ ଜାଣିଲେଣି । ଆମ ଦେଶରେ ୧୯୭୩ ମସିହାରେ ପ୍ରଥମ କରି ଶ୍ରୀ ସୁନ୍ଦରଲାଲ୍ ବହୁଗୁଣା ନାମକ ଜଣେ ସମାଜସେବୀ 'ପରିବେଶ ବଞ୍ଚାଅ' ଅଭିଯାନ ଆରମ୍ଭ କରିଥିଲେ । ଏହାକୁ 'ଚିପ୍‌କୋ ଆନ୍ଦୋଳନ' କୁହାଯାଏ । ଓଡ଼ିଶାରେ ହେଉଥିବା 'ଗନ୍ଧମାଦନ ବଞ୍ଚାଅ ଆନ୍ଦୋଳନ' ଏହିପରି । ଆମେ ଏ ଦିଗରେ ନିଜେ ନିଜେ ଅନେକ କଥା କରିପାରିବା । ପ୍ରତି ଜିନିଷର ଖର୍ଚ୍ଚ ଯେତିକି ଦରକାର ସେତିକି କରିବା । ଆମ ଖର୍ଚ୍ଚ ପରେ ଯେତେ ଅଳ୍ପ ଆବର୍ଜନା ବାହାରିବ ସେତେ ଭଲ । ଆବର୍ଜନା ସବୁକୁ ଏପରି ଜାଗାରେ ପରିତ୍ୟାଗ କରାଯିବ ବା ଏଭଳି ଭାବେ ନଷ୍ଟ କରାଯିବ, ଯାହାଦ୍ୱାରା ଜଳ ବା ବାୟୁ ପ୍ରଦୂଷିତ ହେବ ନାହିଁ । ଆମ ଚାରିପଟେ ଅଧିକ ଅଧିକ ଦରକାରୀ ଗଛ ଲଗାଇବା ଦରକାର । ଏହା ଆମ ଚାରିପଟର ବାୟୁକୁ ପରିଷ୍କାର ରଖିବାରେ ସାହାଯ୍ୟ କରିବ ।

ପରିବେଶର କ୍ଷତି ହେଲେ, ଆଜିର ଅସୁବିଧାଠାରୁ ଆସନ୍ତାକାଲିର ଅସୁବିଧା ଅଧିକ ହେବ । ଏଣୁ ଆମେ ଆମର ସଂଖ୍ୟାକୁ ସୀମିତ ରଖିବାକୁ ହେବ, ଦରକାରକୁ କମ୍ କରିବାକୁ ହେବ ଏବଂ ଜଙ୍ଗଲ ବଢ଼ାଇବାକୁ ହେବ ।

ପରିବେଶ ସୁରକ୍ଷାର ପ୍ରଥମ ସରଳ ଉପାୟଟି ହେଲା—

"ଛୁଆ କମ୍, ଗଛ ବେଶୀ ।"

# ଜଳ ଆମ ଜୀବନ

ବିନା ଜଳରେ ପୃଥିବୀରେ ଜୀବଜନ୍ତୁ, ଗଛଲତା କେହି ଜୀବନ ଧାରଣ କରିପାରିବେ ନାହିଁ । ଏଣୁ ଜଳକୁ ଜୀବନ କୁହାଯାଏ । ପ୍ରଥମେ ଏ ପୃଥିବୀରେ ସବୁକିଛି ଜଳମୟ ଥିଲା । ସେଥିରୁ ଜୀବଜନ୍ତୁ ଓ ଗଛଲତା ସୃଷ୍ଟି ହୋଇଥିଲେ ।



ଜଳଚକ୍ର

ତାହାଦ୍ୱାରା ବଞ୍ଚିଲେ, ବଢ଼ିଲେ ଓ ସେମାନଙ୍କର ବିକାଶ ହେଲା । ଏଣୁ ଆମ ମୁନିଋଷିମାନେ ଜଳକୁ ବହୁତ ସମ୍ମାନ ଦେଉଥିଲେ । ତାକୁ 'ବନ୍ଧୁ' କହୁଥିଲେ । ପୃଥିବୀର ଚାରିଆଡ଼େ ମଣିଷ ସଭ୍ୟତା ଓ ତା'ର ଉନ୍ନତି ନଈକୂଳରେ ଘଟିଛି । କାରଣ ସେ ସବୁ ଜଳଦ୍ୱାରା ବହୁ ଦିଗରୁ ପ୍ରଭାବିତ ।

ମଣିଷର ସାଧାରଣ ବ୍ୟବହାର, ଚାଷ, କାରଖାନା ଓ ବିଜୁଳିଶକ୍ତି ପାଇଁ ଜଳ ଖୁବ୍ ଦରକାରୀ । ପୃଥିବୀର ଚାରିଭାଗରୁ ତିନିଭାଗ ହେଲା ଜଳ । ଆମ ଦେହର ତିନି ଭାଗରୁ ଦୁଇ ଭାଗ ଜଳ । ଆମେ ବର୍ଷା ଯୋଗେ ଜଳ ପାଇଥାଉ । ନଈ, ନାଳ, ପୋଖରୀ, ହ୍ରଦ ଆଦି ବର୍ଷାଜଳରେ ପୂରିଥାଏ । ମାଟି ମଧ୍ୟ କିଛି ଶୋଷି ନିଏ । ଗଛଗୁଡ଼ିକ ଚେରବାଟେ ଏଇ ଜଳକୁ ବ୍ୟବହାର କରି ବଞ୍ଚନ୍ତି । ମେଘ ପୁଣି ଏଇ ସବୁଥିରୁ ଜଳ ପାଇଥାଏ । ପୃଥିବୀର ଜଳ ଖରା ଓ ପବନ ଦ୍ୱାରା ବାଷ୍ପ ହୋଇ ଉପରକୁ ଯାଏ ଓ ସେଠାରେ ମେଘ ଆକାରରେ ରହେ । ସେ ପୁଣି ଶୀତଳ ହୋଇ ଜଳକଣା ହେବାରୁ ଓଜନିଆ ହୋଇଯାଏ ଏବଂ ବର୍ଷା ଆକାରରେ ମାଟି ଉପରକୁ ଆସେ । ଜଳର ଏଇ ଖେଳକୁ 'ଜଳଚକ୍ର' କୁହାଯାଏ ।

ଆମ ଦେଶର ବର୍ଷାକୁ 'ମୌସୁମୀ ବର୍ଷା' କହନ୍ତି । ଏହା ଗୋଟିଏ ଋତୁରେ ବର୍ଷଯାକ ପାଇଁ ଆମକୁ ଜଳ ଯୋଗାଇଥାଏ । ସବୁ ଜଳ ରହି ନ ପାରିବାରୁ ଅନେକ ଜଳ ସମୁଦ୍ରକୁ ବହିଯାଏ । ବାକିତକରେ ଆମେ ବର୍ଷେ ଚଳିଥାଉ । ଏଣୁ ଆମ ପାଇଁ ଜଳ-ସଞ୍ଚୟ ଦରକାର । ଜଳ-ସଞ୍ଚୟ କ'ଣ, ତାହା ଆଲୋଚନା କରିବା ।

## ଜଳ ସଞ୍ଚୟ

ଆମେ ଭାବିବା ଯେ, ପୃଥିବୀରେ ଏତେ ଜଳ ଥାଇ ଜଳକୁ ସାଇତିବା କ'ଣ ଦରକାର ? ଏହା ଜଣାଶୁଣା ଯେ କେବଳ ମଣିଷ ନୁହେଁ, ଅନ୍ୟ ଜୀବଜନ୍ତୁ ଓ ଗଛଲତା ମଧ୍ୟ ଜଳ ବ୍ୟବହାର କରନ୍ତି । କିନ୍ତୁ ସମସ୍ତେ ସବୁ ଜଳ ବ୍ୟବହାର କରିପାରନ୍ତି ନାହିଁ । କାରଣ ଶହେ ଭାଗରୁ ସତାନବେ ଭାଗ ଜଳ ଲୁଣିଆ । ଦୁଇଭାଗ ବରଫ ଓ ତୁଷାର ଝର ଆକାରରେ ଥାଏ । କେବଳ ଶହେଭାଗରୁ ଭାଗେ ଆମ ବ୍ୟବହାର ପାଇଁ ଉପଯୁକ୍ତ । ସେଥିରୁ କିଛି ମାଟିତଳେ, ହ୍ରଦରେ ଓ ପୋଖରୀରେ ରହିଛି । ଆମେ କେବଳ ନଈ, ଝରଣା ଓ କୂଅର ଜଳ ସିଧାସଳଖ ବ୍ୟବହାର କରିପାରୁ । ତେଣୁ ଆମେ ବ୍ୟବହାର କରିପାରୁଥିବା ଜଳ ପୃଥିବୀର ଜଳଭଣ୍ଡାରର ଅତି ଅଳ୍ପ ଅଂଶ ମାତ୍ର ।

ପୁଣି ଦେଖାଯାଉଛି ଯେ ଜଙ୍ଗଲ କ୍ଷୟ ଓ କଳକାରଖାନା ପ୍ରସାର ଯୋଗେ ପାଣିପାଗ ବଦଳି ବର୍ଷା କମିଯାଉଛି । ଯେତିକି ମେଘରୁ ମିଳେ, ତାହା ମାଟି ଧରି ରଖିପାରୁ ନାହିଁ । ଯାହା ବି ରହୁଛି, ସେଥିରୁ ଅନେକ ଜଳ ନାନା କାରଣରୁ ପ୍ରଦୂଷିତ ହେଉଛି । ଏଣୁ ବ୍ୟବହାର ଉପଯୋଗୀ ନିର୍ମଳ ଜଳ ଦିନକୁ ଦିନ କମିବାରେ ଲାଗିଛି । ଯେହେତୁ ଅଭାବରେ ପଡ଼ି ଦୂଷିତ ଜଳ ବ୍ୟବହାର କରିବା ହାନିକାରକ, ନିର୍ମଳ ଜଳ ସଂଚୟ କରିବା ଜରୁରୀ ଅଟେ । ଆମେ କିନ୍ତୁ ଜଳକୁ ମନଇଚ୍ଛା ବ୍ୟବହାର କରୁ । ବଢ଼ି, ମରୁଡ଼ି ବା ପ୍ରଦୂଷଣ ହେଲେ, ଜଳ ବିଷୟରେ କିଛିଟା ଚିନ୍ତା କରୁ । ଏହି ବେପରୁଆ ଭାବ ଠିକ୍ ନୁହେଁ ।

ଜଳ ପରିବେଶର ଅଂଶ । କିନ୍ତୁ ସମୁଦାୟ ପରିବେଶ ତାହାର ଶାସନାଧୀନ । ସେ ହେଉଛି ପରିବେଶର ରାଜା । ତା'ର ଯତ୍ନ ନେବା ମାନେ ହିଁ ପରିବେଶକୁ ରକ୍ଷା କରିବା ।

## ଜଳ ପ୍ରଦୂଷଣ

ନିତିଦିନିଆ ବ୍ୟବହାର ଓ କଳକାରଖାନା ପାଇଁ ଜଳ ଲୋଡ଼ା ହୁଏ । ଯେଉଁ ଜଳ ବ୍ୟବହାର ହୋଇଯାଏ, ତାହା ଦୂଷିତ ହୋଇ ପୁଣି ପରିବେଶ ମଧ୍ୟକୁ ଚାଲିଆସେ । ଆମ ଦେହର ଝାଳ, ମୂତ୍ର ଓ କାରଖାନାର ମଇଳା ପାଣି ଏହାର ଉଦାହରଣ । ଏ ସବୁଥିରେ ଅନେକ କ୍ଷତିକାରକ ପଦାର୍ଥ ମିଶିଥାଏ । ଆମେ ଭୋଗୁଥିବା ରୋଗମାନଙ୍କ ମଧ୍ୟରୁ ଶହକେ ପଞ୍ଚଷଠିଟି ଦୂଷିତ ଜଳ ଯୋଗେ ହୁଏ । ନାଳଝାଡ଼ା, ନାଳରକ୍ତ ଝାଡ଼ା, ଟାଇଫଏଡ୍, କାମଳ ଇତ୍ୟାଦି ଏହି ପ୍ରକାରର ରୋଗ । ଆମେ ବର୍ତ୍ତମାନ ଯେତେ ଜଳ ବ୍ୟବହାର ପାଇଁ ପାଉଛୁ, ସେଥିରୁ ଶହକେ ସତୁରି ଭାଗ ପ୍ରଦୂଷିତ ।

## ଜଳ-ପ୍ରଦୂଷଣର କାରଣ

ଜଳରେ ଅନେକ ପଦାର୍ଥ ଭେଦିଯାଏ । କେତେକ ନ ଭେଦି ଭାସେ କିମ୍ବା ବୁଡ଼ିଯାଏ । ଆମର ପିଇବା, ରୋଷେଇବାସ, ଲୁଗାସଫା, ଗାଧୁଆ ଇତ୍ୟାଦି ପରେ ଯେଉଁ ଜଳ ବହିଯାଏ, ସେଥିରେ ଏପରି କିଛି ନା କିଛି ପଦାର୍ଥ

ମିଶିଯାଇଥାଏ । ଚାଷ, ଜଳସେଚନ, ବିଜୁଳି ଉତ୍ପାଦନ ଓ କାରଖାନା ପାଇଁ ଖର୍ଚ୍ଚ ହେଉଥିବା ଜଳ ମଧ୍ଯ ଅନେକ ଦୂଷିତ ପଦାର୍ଥ ବହନ କରି ବହିଯାଏ ।



ଜଳ ପ୍ରଦୂଷଣ

ଏ ସବୁ ବାଦ ସାର, କୀଟନାଶକ ଔଷଧ ଓ କଳକାରଖାନାର ବଳକା ମଇଳା ଇତ୍ୟାଦି ଜଳକୁ ପ୍ରଦୂଷିତ କରେ । ନଈ, ନାଳ, ପୋଖରୀ ଓ ଝରଣାରେ ଆମେ ଅନେକ ମଇଳା ପଦାର୍ଥ ଛାଡ଼ିଥାଉ । ଏ ସବୁଥିରେ କିଛି ଜୀବାଣୁ ଥାଆନ୍ତି । ସେମାନେ ଜଳର ଅମ୍ଳଜାନକୁ ବ୍ୟବହାର କରିଦେବାରୁ ଅନ୍ୟ

ଜଳଜୀବମାନଙ୍କ ପାଇଁ ଅମ୍ଳଜାନ ଅଭାବ ହୁଏ । ଏହାଦ୍ୱାରା ସେମାନେ ମରି, ପଚି, ଜଳ ଅଧିକ ଦୂଷିତ ହୋଇପାରେ । କଳକାରଖାନାରୁ ବାହାରି ଯାଉଥିବା ଅନେକ ବିଷାକ୍ତ ରାସାୟନିକ ପଦାର୍ଥ ମଧ୍ୟ ଜଳକୁ ପ୍ରଦୂଷିତ କରିଥାଏ । ଖଣିରୁ ବାହାରୁଥିବା ବିଷାକ୍ତ ପଦାର୍ଥ ଓ ଧୋଇ ହୋଇ ଆସିଥିବା ମାଟି ଦ୍ୱାରା କିଛି ଜଳ ପ୍ରଦୂଷିତ ହୋଇଥାଏ । ଏହି ଜଳକୁ ବ୍ୟବହାର କଲେ ଅନେକ ରୋଗ ହୁଏ । ଏଥିରେ ଗାଧୋଇଲେ ଚର୍ମରୋଗ ହୋଇଥାଏ । ଏହାକୁ ଚାଷରେ ଲଗାଇଲେ ଫସଲ ରୋଗା ହୁଏ ।

ପୁରୀ ଓ ଭୁବନେଶ୍ୱରର ପୋଖରୀମାନଙ୍କ କଥା ଦେଖିବା । ସେ ସବୁଥିରେ ନେଳୀ ଓ ଦୁର୍ଗନ୍ଧ ରହିଛି । ଏଥିରେ ବିଭିନ୍ନ ଧାର୍ମିକ କାରଣରୁ ଆମେ ପ୍ରତିଦିନ ନୂଆ ନୂଆ ମଇଳା ଜିନିଷ ଫିଙ୍ଗିଥାଉ । ଏ ସବୁ ପଚିସଢ଼ି ସେ ପୋଖରୀଗୁଡ଼ିକ ଅଧିକ ପ୍ରଦୂଷିତ ହେଉଛନ୍ତି । ଗାଁଗଣ୍ଡାରେ ଗୋଟିଏ ପୋଖରୀରେ ଗାଧୁଆ, ବାସନମଜା, ଲୁଗାକଚା, ଗାଈ-ମଇଁଷି ଗାଧୁଆ ଓ ଶୌଚ ଆଦି ହେବାରୁ ତାହା ପ୍ରଦୂଷିତ ହେଉଛି । ଏ ସବୁର ଜଳ ପିଇବା କିମ୍ବା ଗାଧୋଇବା ପାଇଁ ଉପଯୁକ୍ତ ନୁହେଁ ।

ଚାଷଜମି ଦେଇ ବହିଯାଉଥିବା ଜଳ ସାର ଓ କୀଟନାଶକ ଔଷଧ ନେଇ ନଈନାଳରେ ମିଶାଏ । ସେଥିରେ ପୁଣି କଳକାରଖାନା, ଖଣିର ମଇଳା ଓ ବିଷାକ୍ତ ପଦାର୍ଥ, ସହରର ନଳାପାଣି ମଧ୍ୟ ଯାଇ ମିଶେ । ଓଡ଼ିଶାର ମହାନଦୀ, ବ୍ରାହ୍ମଣୀ ଓ ଋଷିକୂଲ୍ୟା ନଦୀ ଏହିଭାବେ ପ୍ରଦୂଷିତ । ଗଙ୍ଗାନଦୀ ମଧ୍ୟ ଏତେ ଜଳ ଥିବା ସତ୍ତ୍ୱେ ଏସବୁ କାରଣରୁ ଅତ୍ୟଧିକ ପ୍ରଦୂଷିତ ହୋଇଯାଇଛି । ଏହାର ଜଳକୁ ଶୋଧନ କରିବାକୁ ବର୍ତ୍ତମାନ ଭାରତ ସରକାର କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି ।

## କେତେକ ଜାଣିବା କଥା

୧. ଆମ ଦେଶରେ ବର୍ଷକୁ ୪୦୦ ନିୟୁତ ହେକ୍ଟର୍-ମିଟର ବର୍ଷା ହୁଏ । (ଏକ ହେକ୍ଟର୍ ଜମିରେ ଏକ ମିଟର ଉଚ୍ଚରେ ଜଳ ରହିଲେ, ତାକୁ ଏକ ହେକ୍ଟର-ମିଟର ଜଳ ବୋଲି କୁହାଯାଏ ।)

୨. ୨୦୦୦ ମସିହା ଶେଷକୁ ଆମ ଦେଶର ଜଳ-ଆୟରୁ ଶତକଡ଼ା ୯୩ ଭାଗ ଜଳ ଚାଷ ପାଇଁ ଦରକାର ହୋଇପାରେ ।

୩. ଏକ କିଲୋଗ୍ରାମ୍ ଧାନ ଅମଳ ପାଇଁ ୨୦୦୦ରୁ ୪୦୦୦ ଲିଟର ଜଳ ଦରକାର ହୋଇଥାଏ ।

୪. ଆମ ଦେଶରେ ସବୁଠାରୁ ବେଶୀ ବର୍ଷା ହୁଏ ମେଘାଳୟ ରାଜ୍ୟର ଚେରାପୁଞ୍ଜିଠାରେ ।

୫. ସମୁଦାୟ ବର୍ଷାଜଳର ଦଶଭାଗରୁ ଏକ ଭାଗ ଆମେ ବ୍ୟବହାର କରୁ ।

୬. ଖଣ୍ଡିଏ ଖବରକାଗଜ ତିଆରି କରିବାକୁ କାଗଜ କଳ ନ' ଲିଟର ପାଣି ଦରକାର କରେ ।

୭. ଜଣପିଛା ଦୈନିକ ୧୩୫ ଲିଟର ଜଳ ଦରକାର ଥିଲେ ବି ଆମେ ମାତ୍ର ୭୨ ଲିଟର ପାଉ ।

୮. ଆମ ଦେଶର ପ୍ରାୟ ୩୨,୦୦୦ ଗ୍ରାମରେ ପିଇବା ପାଣି ମିଳେ ନାହିଁ ।

# ବଢ଼ି ଓ ମରୁଡ଼ି

ବଢ଼ି ଓ ମରୁଡ଼ି ଆମ ଦେଶର ସବୁଠାରୁ ବଡ଼ ପ୍ରାକୃତିକ ଶତ୍ରୁ । ଏଣୁ କୁହାଯାଏ, "ଜଳ ଗହଳେ ସୃଷ୍ଟି ନାଶ, ଜଳ ବିହୁନେ ସୃଷ୍ଟି ନାଶ" । ବେଶୀ ବର୍ଷା ହେଲେ ନଈ ନାଳ ଉଛୁଳି ବଢ଼ି ହୁଏ । ବର୍ଷା ଅଭାବ ହେଲେ ନଈ ନାଳ ଶୁଖିଯାଏ ଓ ଫସଲ ଚାଷ ହୋଇପାରେ ନାହିଁ । ଏସବୁ ଘଟଣା ଅତୀତରୁ ଘଟିଚାଲିଛି । କିନ୍ତୁ ଆଜିକାଲି ଯେପରି ଭାବରେ ଘଟୁଛି, ସେଥିପାଇଁ ଆମେ ନିଜେ ଅନେକ ପରିମାଣରେ ଦାୟୀ । ମଣିଷର କାର୍ଯ୍ୟକଳାପ ଯୋଗେ ପରିବେଶର ବିଭିନ୍ନ ଭାଗରେ ଅନୁପାତ କମ୍ ବେଶୀ ହୋଇ ଏ ସବୁ ଘଟୁଛି । କାରଣ ପାଣିପାଗ ଓ ବର୍ଷାର ଗତି ବଦଳିଯାଉଛି । ମଣିଷର କେତେକ୍ ମନମୁଖୀ କାରବାର ପରିବେଶର ଅନୁପାତ ଓ ଗତିବିଧିରେ ହାନି ପହଞ୍ଚାଇଥାଏ । ଯେତେ ଇଚ୍ଛା ଜଙ୍ଗଲ କଟା, ମାଟିର କ୍ଷୟ ହେବାଭଳି କାର୍ଯ୍ୟକଳାପ, ଜଳର ଅପବ୍ୟବହାର, ଚାରଣଭୂମିର ଅନୁଚିତ ବ୍ୟବହାର ଇତ୍ୟାଦି ପରିବେଶର ଅନୁପାତ ନଷ୍ଟ ପାଇଁ ଦାୟୀ । ଏ ସବୁ ବିନା ଆଗପଛ ବିଚାରରେ ଚାଲିଛି । ଏଣୁ ଇଥିଓପିଆ ଦେଶ, କଳାହାଣ୍ଡି ଜିଲ୍ଲା, ବଙ୍ଗଳାଦେଶ ବା ଆସାମ ପ୍ରଦେଶ, ଯେଉଁଠି ହେଉ, ବଢ଼ି ଓ ମରୁଡ଼ି ପାଇଁ ଉପରଲିଖିତ କାରଣଗୁଡ଼ିକ ଦାୟୀ ।

## ବଢ଼ିର କାରଣ ଓ ପ୍ରତିକାର

ନଈବଢ଼ିରେ ଜମିବାଡ଼ି, ଘରଦ୍ୱାର, ରାସ୍ତା ଓ ରେଳପଥ ଭାସିଯାଏ । ଅନେକ ଧନଜୀବନ କ୍ଷତି ହୁଏ । ଏଣୁ ବଢ଼ି କାହିଁକି ହୁଏ, ତାହା ଜାଣିବା ଦରକାର ।

ଆମ ଦେଶରେ ବହୁତ ନଈ ନାଳ ରହିଛି । ସେଗୁଡ଼ିକ ଆମ ଚାଷବାସ ଓ ଜୀବନଧାରଣ ପାଇଁ ଉପକାରୀ । ସେ _ସବୁରେ ହଠାତ୍ ଅନେକ ଜଳ ଆସିଗଲେ ବଢ଼ି ହୁଏ । ଉପର ମୁଣ୍ଡରେ ଜଙ୍ଗଲ ନ ଥିଲେ ବର୍ଷାଜଳ ଅଟକି ରହିପାରେ ନାହିଁ । ଏହା ହେଲା ମୂଳ କାରଣ । ଜଙ୍ଗଲ ମନଇଚ୍ଛା କାଟିବା



ବଢ଼ିର ପ୍ରକୋପ

ଫଳରେ ଆମ ଦେଶରେ ବଢ଼ି ସକାଶେ କ୍ଷୟକ୍ଷତି ଚଉଦ ଗୁଣ ବଢ଼ିଛି । ବର୍ଷକୁ ଦୁଇ ହଜାର କୋଟି ଟଙ୍କାର ଧନସମ୍ପତ୍ତି ନଷ୍ଟ ହେଉଛି । ଏହା ଆମକୁ

ଗରିବ କରିବା ପାଇଁ ଦାୟୀ । ଓଡ଼ିଶାରେ ବଢ଼ିଯୋଗେ ଗତ ନବେବର୍ଷ ଭିତରେ ଯେତେ କ୍ଷତି ଘଟିଛି, ତାହା ପୂରଣ ହେବା ଅତି କଷ୍ଟକର ।

ଜଙ୍ଗଲ ନଷ୍ଟ ହେଲେ ଜଳ କେବଳ ଅଟକି ନ ପାରି ମାଡ଼ି ଆସେ ନାହିଁ, ସାଥିରେ ମାଟିକୁ ମଧ୍ୟ ତାଡ଼ି ବୋହି ଆଣିଥାଏ । ଏହାଯୋଗେ ନଈ ପୋତି ହୋଇଯାଏ । ତେଣୁ ଭବିଷ୍ୟତରେ ବଢ଼ିର ପ୍ରକୋପ ଓ କ୍ଷତି ଅଧିକ ହୁଏ । ଏଣୁ ଜଙ୍ଗଲ କଟା ବନ୍ଦ କରି, ନଈର ଉପରମୁଣ୍ଡରେ ନୂଆ ଜଙ୍ଗଲ କରିବାକୁ ହେବ । ନଈ ବନ୍ଧ କଡ଼େ କଡ଼େ ବଡ଼ ବଡ଼ ଗଛ ଲଗାଇବାକୁ ହେବ । ମାଟି ଧୋଇ ନ ଯିବାର ସବୁ ସୁବିଧା ହେବା ଦରକାର । ବଡ଼ ନଦୀବନ୍ଧ ଯୋଜନା ଓ ଛୋଟ ଛୋଟ ଜଳସେଚନ ଯୋଜନା କରିବାକୁ ହେବ । ତେଣୁ ବନୀକରଣ ଯୋଜନା ହୋଇଛି । ଜଙ୍ଗଲ ସୁରକ୍ଷା ଆଇନ୍ ହୋଇଛି । ଓଡ଼ିଶାରେ ହୀରାକୁଦ, ରେଙ୍ଗାଲୀ ଓ ଟିକରପଡ଼ା ପରି ନଦୀବନ୍ଧ ଯୋଜନାମାନ ହୋଇଛି ବା ହେଉଛି ।

## ମରୁଡ଼ିର କାରଣ ଓ ପ୍ରତିକାର

ଅଳ୍ପ ବର୍ଷା ହେଲେ ବା ବର୍ଷା ନ ହେଲେ ନଈ, ନାଳ, ପୋଖରୀ, ଗଡ଼ିଆ ଆଦି ଶୁଖିଯାଏ । ଫସଲ ହୁଏ ନାହିଁ ଓ ଖାଇବାକୁ ମିଳେ ନାହିଁ । ମଣିଷ ଓ ଗାଈଗୋରୁ ଅକାଳରେ ମରନ୍ତି । ମରୁଡ଼ି ଅନେକ ପ୍ରକାରର । ବର୍ଷା ନ ହେଲେ, ମାଟିତଳର ଜଳ କମିଗଲେ ଓ ମାଟିରେ ମିଶିଥିବା ଜଳ ଶୁଖିଗଲେ ଫସଲ ଜଳ ପାଏ ନାହିଁ, ମରୁଡ଼ି ହୁଏ । ଠାଏ ଠାଏ ଏ ତିନି ପ୍ରକାରର କାରଣ ଏକାଠି ଘଟିଥାଏ । ରାଜସ୍ଥାନ, ପଶ୍ଚିମ ଓଡ଼ିଶା, ଗୁଜରାଟ ଓ ଆନ୍ଧ୍ରରେ ଏ ବିପଦ ପ୍ରାୟ ପଡ଼ିଥାଏ ।

ଜଙ୍ଗଲ ମନଇଚ୍ଛା କାଟିଲେ ମାଟିର ପାଣି ଧରି ରଖିବା କ୍ଷମତା ଚାଲିଯାଏ । ବର୍ଷା କମ୍ ହୁଏ । ତେଣୁ ମାଟିତଳର ଜଳକୁ ମନଇଚ୍ଛା ବ୍ୟବହାର କରାଯାଏ । ଯେଉଁ ଅଳ୍ପ ବର୍ଷା ହୁଏ, ତାହା ବହିଯାଏ ଓ ମାଟି ଭସାଇନିଏ । ତେଣୁ ଭୟଙ୍କର ମରୁଡ଼ି ଦେଖାଦିଏ । ଏ ସବୁରୁ ରକ୍ଷା ପାଇବାର ଗୋଟିଏ ଉପାୟ



ଭୟଙ୍କର ମରୁଡି

ହେଲା ଜଙ୍ଗଲ ରକ୍ଷା କରିବା, ଅନେକ ନୂଆ ନୂଆ ଗଛ ଲଗାଇବା ଏବଂ ମିଳୁଥିବା ଜଳର ଉଚିତ ବ୍ୟବହାର କରିବା ।

## ଆମେ କ'ଣ କରୁଛେ ବା କରିବା

ଆମକୁ ବର୍ଷସାରା ଜଳ ମିଳେ ନାହିଁ ଏବଂ ସବୁବର୍ଷ ବର୍ଷାଋତୁରେ ସମାନ ପରିମାଣରେ ଜଳ ମିଳେ ନାହିଁ । ଏଣୁ ଯେତିକି ଜଳ ମିଳେ ତା'ର ଉଚିତ ଖର୍ଚ୍ଚ ଓ ସଞ୍ଚୟ ଦରକାର । ଏହି କାମ କିଛି ଅଂଶରେ ପ୍ରକୃତି କରିଥାଏ ଓ ମଣିଷ ମଧ୍ୟ କରେ । ବଡ଼କଥା ହେଲା, ମଣିଷ ଯାହା କରିବ, ତାହା ପ୍ରକୃତିର କାମ ପାଇଁ ସହଯୋଗୀ ହେବା ଦରକାର ।

ବର୍ଷାଦିନେ ଏକାଠି ଗୁଡ଼ାଏ ଜଳ ମିଳୁଥିବାବେଳେ ତାକୁ ଧରି ରଖିବା, ମାଟିରେ ଭେଦିବାକୁ ଦେବା ଓ ଧୀର ଗତିରେ ବହିବାକୁ ଦେବା ଇତ୍ୟାଦି କାମ ଜଙ୍ଗଲ କରିଥାଏ । ଏଣୁ ଆମେ ଜଙ୍ଗଲ ରକ୍ଷା କରିବା, ଉଜୁଡ଼ା ଜଙ୍ଗଲକୁ ପୁଣି ସଜାଡ଼ିବା, ପଡ଼ିଆ ଓ ନଈକୂଳେ ନୂଆ ନୂଆ ଗଛ ଲଗାଇବା, ବହିଯାଉଥିବା ଜଳକୁ ଖରାଦିନ ପାଇଁ ସାଇତି ରଖିବାକୁ ଜଳଭଣ୍ଡାର, ପୋଖରୀ ଓ ଗଡ଼ିଆ ଇତ୍ୟାଦି ତିଆରି କରିବା । ଏପରି କଲେ ବଢ଼ି ଦାଉରୁ ରକ୍ଷା ମିଳିବ ଓ ମରୁଡ଼ିବେଳେ ଜଳର ଅଭାବ ବେଶୀ ବାଧିବ ନାହିଁ । ବଢ଼ି ଓ ମରୁଡ଼ି ହେଲେ ସରକାରଙ୍କୁ ଅନେକ କଥା କରିବାକୁ ପଡ଼େ ଓ ଆମେ ମଧ୍ୟ ବହୁତ କିଛି କରିବାକୁ ଆଗେଇ ଆସୁ । କିନ୍ତୁ ସବୁଠାରୁ ବଡ଼ କଥା ହେବ ଯଦି ସେ ସବୁ ଘଟିବାକୁ ଦିଆ ନ ଯାଏ । କେବଳ ପରିବେଶକୁ ରକ୍ଷା କଲେ ହିଁ, ସେ ଆମକୁ ଏ ସବୁଥିରୁ ରକ୍ଷା କରିବ ।

## ଭାବିବାର କଥା

ଆମ ଦେଶର ତିନି ଭାଗରୁ ଭାଗେ ଲୋକ ବଢ଼ି ଅଞ୍ଚଳରେ ରହନ୍ତି । ଶହକେ ଉଣେଇଶ ଜଣ ମରୁଡ଼ି ଅଞ୍ଚଳରେ ରହନ୍ତି । ପାଞ୍ଚବର୍ଷରେ ବଢ଼ି ଓ ମରୁଡ଼ି ପାଇଁ ଯେତିକି ଅଧିକ ଖର୍ଚ୍ଚ ହୁଏ, ସେଥିରେ ଦେଢ଼ବର୍ଷ ପାଇଁ ଦେଶର ସବୁ ଯୋଜନା ଖର୍ଚ୍ଚ ତୁଲାଇ ହୁଅନ୍ତା । ତେଣୁ ପରିବେଶକୁ ରକ୍ଷା କରି, ଜଳ ସଂଚୟ କରି ବଢ଼ି ଓ ମରୁଡ଼ି ଦାଉରୁ ଦେଶକୁ ରକ୍ଷା କରିବା ଅତି ଜରୁରୀ ଅଟେ ।

# ନଦୀବନ୍ଧ ଯୋଜନା

ନଈ ପାଣିକୁ ସୁବିଧା ଜାଗାରେ ବନ୍ଧାଇ ରଖି ବଡ଼ ବଡ଼ ଜଳଭଣ୍ଡାର ତିଆରି ହୁଏ । ଏଥିରେ ଜଳ ସଞ୍ଚୟ କରି ରଖାଯିବାରୁ ଚାଷକାମରେ ଦରକାର



ଜଳଭଣ୍ଡାର

ହୁଏ । ବଢ଼ିକୁ ଏଡ଼େଇ ହୁଏ ଏବଂ ବିଜୁଳିଶକ୍ତି ବାହାର କରାଯାଇପାରେ । ଏହି ନଦୀବନ୍ଧ ଯୋଜନା ଆମର ଏତେ ଉପକାର କରୁଥିଲେ ମଧ୍ୟ, ପରିବେଶର କେତେକ କ୍ଷତି ଘଟାଇ ଆମର ଅପକାରକୁ ଡାକି ଆଣିପାରେ । ଏହା କିପରି ଓ ଏଥିପାଇଁ କ'ଣ କରାଯାଇପାରିବ, ସେ ଧାରଣା ଆମର ରହିବା ଉଚିତ ।

## ନଦୀବନ୍ଧ କି କ୍ଷତି କରେ

ନଈ ମାଟି ଧୋଇ ନେବା ଏକ ସାଧାରଣ ଘଟଣା । ନଈକୂଳରେ ମଣିଷ ଓ ଗୋରୁଗାଈ ଚଳିଲେ ଏବଂ ଉପରମୁଣ୍ଡରୁ ଜଙ୍ଗଲ ନଷ୍ଟ ହେଲେ, ଏହି ମାଟି ଧୋଇଯିବା ଅଧିକ ହୁଏ । ବହି ଆସୁଥିବା ମାଟି ବନ୍ଧାଯାଇଥିବା ଜଳଭଣ୍ଡାରରେ ଜମା ହୁଏ । ଏହା ପାଖାପାଖି ଅଞ୍ଚଳର ଜଳବାୟୁକୁ ଦୂଷିତ କରେ । ନଈ ତଳମୁଣ୍ଡକୁ ବର୍ଷସାରା ପାଣି ଯୋଗାଇବାକୁ ଏବଂ ବିଜୁଳିଶକ୍ତି ବାହାର କରିବା ପାଇଁ ଜଳଭଣ୍ଡାରର ସବୁଯାକ ପାଣି କେବଳ ଚାଷ ପାଇଁ ଖାଲି କରିଦେଇ ହେବ ନାହିଁ । ସବୁବେଳେ ମାଟିମିଶା ଜଳ ଜମା ହୋଇ ରହୁଥିବାରୁ ପାଖ ଅଞ୍ଚଳର ଜଳବାୟୁ ଲୁଣି ହୋଇଯାଏ । ଏହା ପରିବେଶ ପାଇଁ କ୍ଷତିକାରକ ।

ଜଳଭଣ୍ଡାର ପାଇଁ ବିରାଟ ଅଞ୍ଚଳ ଜଳମଗ୍ନ ହୁଏ । ଏଥିରେ ବହୁତ ଜଙ୍ଗଲ ଓ ଗ୍ରାମ ଥାଇପାରେ । ସେଠାରେ ଥିବା ଲୋକେ କାମ ନ ପାଇ ପାଖଆଖର ଜଙ୍ଗଲକୁ ନଷ୍ଟ କରି ପେଟ ପୋଷନ୍ତି । ସେହି ନଷ୍ଟ ଜଙ୍ଗଲ କାଳକ୍ରମେ ପଡ଼ିଆ ହୁଏ ଏବଂ ବର୍ଷା ହେଲେ ସେଥିର ମାଟି ଧୋଇଯାଏ । ପାଖର ବାୟୁମଣ୍ଡଳରୁ ଜଳୀୟ ଅଂଶ କମିଯାଏ । ଜଙ୍ଗଲୀ ପଶୁପକ୍ଷୀ ନଷ୍ଟ ହୁଅନ୍ତି । ପରିବେଶ ସୁରକ୍ଷା ପ୍ରତି ନଜର ନ ରଖି ଯେଉଁ ନଦୀବନ୍ଧ ଯୋଜନାଗୁଡ଼ିକ ତିଆରି ହୋଇଛି, ତାହା ପରିବେଶକୁ ନଷ୍ଟ ଓ ପ୍ରଦୂଷିତ କରିଛି । ସ୍ଥାନୀୟ ଲୋକଙ୍କର ଜୀବିକା ମଧ୍ୟ ନଷ୍ଟ କରିଛି ।

ହୀରାକୁଦ ବନ୍ଧ କଥା ଦେଖିବା । ଏହା ମହାନଦୀର ତଳମାଳ ଅଞ୍ଚଳକୁ ବଢ଼ିରୁ ରକ୍ଷା କରିଛି । ଚାରି ଲକ୍ଷ ଏକର ଜମିକୁ ଜଳସେଚିତ କରିପାରିଛି ଓ ବିଜୁଳିଶକ୍ତି ଯୋଗାଉଛି । କିନ୍ତୁ ଉପରମୁଣ୍ଡରେ ପ୍ରଚୁର ଜଙ୍ଗଲ କଟାଯାଇଥିବାରୁ ବର୍ଷା କମିଯାଇଛି । ଉଜୁଡ଼ା ଜଙ୍ଗଲରୁ ମାଟି ଧୋଇହୋଇ ଆସି ଜଳଭଣ୍ଡାର

ଓ ବନ୍ଧକୁ ବିପଦ ହେଲାଣି । ସ୍ଥାନୀୟ ଜଳବାୟୁ ଶୁଷ୍କ ହୋଇ ଏ ଅଞ୍ଚଳର ଉତ୍ତାପ ବଢ଼ିଯାଇଛି । ଗୋଟିଏ ନଦୀବନ୍ଧ ଯୋଜନା ପାଇଁ ଯେଉଁ ଜଙ୍ଗଲ ନଷ୍ଟ ହୁଏ, ସେଥିରୁ ଧୋଇ ହୋଇ ଆସୁଥିବା ମାଟିର ବଳ ଆମ ଦେଶରେ ପ୍ରତିବର୍ଷ ଆମଦାନୀ ହେଉଥିବା ସାରର ଦୁଇଗୁଣ ।

ନଦୀବନ୍ଧ ଯୋଜନା ତିଆରି ପୂର୍ବରୁ ଜଙ୍ଗଲ ଓ ମାଟିର ସୁରକ୍ଷା ପାଇଁ ଯୋଜନା ନ ହୋଇଥିଲେ, ମୂଳ ଯୋଜନା କିଛି ଲାଭ ଦେଇ ଅଧିକ କ୍ଷତି କରିଥାଏ । ଏପରିକି ବନ୍ଧ ଓ ଜଳଭଣ୍ଡାରର ଆୟୁଷ ଅଳ୍ପ ଦିନରେ ଶେଷ ହୁଏ ।

# ବଣଜଙ୍ଗଲ

ବଣଜଙ୍ଗଲ ଭିତରୁ ଆମ ଦେଶର ସଭ୍ୟତା ତିଆରି ହୋଇଛି । ସେଠାରେ ମୁନି ଋଷି ରହୁଥିଲେ, ସୁନ୍ଦର ପରିବେଶ ଥିଲା ଓ ସବୁଯାକ ଗୁରୁକୁଳ ଥିଲା । ଆଦିମ ଯୁଗରୁ ବଣ ସହିତ ମଣିଷର ସମ୍ପର୍କ ରହିଛି । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ବଣ ସକାଶେ ଆମକୁ ଖାଇବା, ପିନ୍ଧିବା ଓ ରହିବାର ସବୁ ସୁବିଧା ମିଳି ଆସୁଛି । ବଣ-ଜଙ୍ଗଲ ଓ ଗଛଲତାକୁ ଆମ ଶାସ୍ତ୍ର-ପୁରାଣରେ ବହୁତ ଗୁରୁତ୍ୱ ଦିଆଯାଇଛି । କାରଣ, ତାହା ବର୍ଷା କରିବା ପାଇଁ ଦାୟୀ । ବର୍ଷା ସକାଶେ ଏ ଦେଶ ବଞ୍ଚିଛି । ବର୍ଷା ନ ହେଲେ ଅପାଳକ ହେଲା ବୋଲି କୁହାଯାଏ ।



ବଣ ଜଙ୍ଗଲ

ଆଜି ବଣଜଙ୍ଗଲ ପଦା ହୋଇ ମଣିଷର ଦଖଲକୁ ଆସିଗଲାଣି । ପରିବେଶର ରୂପ ବଦ୍‌ଳିଯାଇଛି । ବର୍ଷାର ପରିମାଣ କମିଯାଇଛି । ଯେତିକି ବର୍ଷା ହେଉଛି, ଠିକ୍ ଭାବରେ ସବୁ ଜାଗାରେ ହେଉ ନାହିଁ । ଏଣୁ ମାଟି ଧୋଇଯିବା, ଜଳର ଅଭାବ, ମରୁଡ଼ି ଓ ବଢ଼ି ଆଦି ବିପଦ ଘଟୁଛି । ଜଙ୍ଗଲ ବାୟୁକୁ ପରିଷ୍କାର କରେ । ଗଛମାନେ ଅଙ୍ଗାରକାମ୍ଳ ଶୋଷି ନେଇ ଖାଦ୍ୟ ତିଆରି କରନ୍ତି ଓ ଅମ୍ଳଜାନ ଛାଡ଼ନ୍ତି । ଜଙ୍ଗଲ ହାନି ଯୋଗେ ବାୟୁରେ ଅଙ୍ଗାରକାମ୍ଳ ଭାଗ ବଢ଼ିଯାଇ କ୍ଷତି କରୁଛି । ବାୟୁରେ ଜଳୀୟ ଭାଗ ଅଳ୍ପ ହୋଇ ଉତ୍ତାପ ବଢ଼ିଯାଉଛି । ଆଜି ଆମ ଦେଶର ଆକାର ତୁଳନାରେ ମାତ୍ର ଶତକଡ଼ା ଏଗାର ଭାଗ ଜଙ୍ଗଲ ଅଛି । ଏହା ଶତକଡ଼ା ତେତିଶ ଭାଗ ହେବା ଉଚିତ । ତଥାପି ଗଛ କଟା ଚାଲିଛି । ଏପରି ଚାଲିଲେ ଦିନ ଆସିବ, ଯେତେବେଳେ କୌଣସି ଜୀବଜନ୍ତୁ ବଞ୍ଚିବା ସମ୍ଭବ ହେବ ନାହିଁ ।

ଜଙ୍ଗଲରୁ ଆମକୁ ଖାଦ୍ୟ, ଜାଳେଣି, ପଟୁସାର, ଔଷଧ ତିଆରି ଚେରମୂଳି, କାଗଜ ପାଇଁ କଞ୍ଚାମାଲ୍, ଝୁଣା, ଲାଖ, ପିନ୍ଧିବା ଓ ଘରତିଆରି ପାଇଁ ଦରକାରୀ ଉପକରଣ ମିଳିଥାଏ । ଏଥିଯୋଗେ ବଞ୍ଚିହୁଏ, ବେପାର ବଣିଜ କରି ରୋଜଗାର କରି ହୁଏ । ଜଙ୍ଗଲ ଆମ ମନକୁ ଆନନ୍ଦ ମଧ ଦେଇଥାଏ ।

ଜଙ୍ଗଲ ଅଟଇ ଅମୂଲ୍ୟ ନିଧି,
ତାକୁ ନଷ୍ଟ କଲେ ଦଣ୍ଡିବ ବିଧି ।

## ଜଙ୍ଗଲର ବିଭାଗ

ଆମ ଦେଶରେ ପାଞ୍ଚ ପ୍ରକାରର ଜଙ୍ଗଲ ଦେଖାଯାଏ । ସେଗୁଡ଼ିକ ହେଲା ଚିରହରିତ୍, ପର୍ଣ୍ଣମୋଚୀ, ଶୁଷ୍କ, ପାହାଡ଼ିଆ ଓ ତଟଦେଶୀୟ । ବହୁତ ବର୍ଷା ହେଉଥିବା ଅଞ୍ଚଳରେ ଚିରହରିତ୍ ଜଙ୍ଗଲ ଦେଖାଯାଏ । ଏହା ସବୁବେଳେ ସତେଜ, ସବୁଜ ଓ ଘଞ୍ଚ । ମଧ୍ୟମ ବର୍ଷା ହେବା ଓ ଅଳ୍ପ ଉତ୍ତାପ ଥିବା ଜାଗାରେ ପର୍ଣ୍ଣମୋଚୀ ଜଙ୍ଗଲ ଦେଖିବାକୁ ମିଳେ । ଏହା ଘଞ୍ଚ ନୁହେଁ ଓ ଶୁଖିଲା ଋତୁରେ ଶୁଖି ଥୁଣ୍ଟା ହୋଇଯାଏ । ଅଳ୍ପ ବର୍ଷା ହେବା ଅଞ୍ଚଳରେ ଶୁଷ୍କ ଅରଣ୍ୟ ଥାଏ । ଏହା

ବୁଦୁବୁଦୁକିଆ ଛୋଟ ଗଛର ଜଙ୍ଗଲ । ପାହାଡ଼ିଆ ଅଞ୍ଚଳରେ ଯେତେ ବର୍ଷା ହେଲେ ମଧ୍ୟ ପାଣି ଗଡ଼ି ଆସୁଥିବାରୁ ତୋଟା ଭଳି ଜଙ୍ଗଲ ଦେଖାଯାଏ । ତଟଦେଶୀୟ ଜଙ୍ଗଲ ସମୁଦ୍ରକୂଳ ଓ ସନ୍ତସନ୍ତିଆ ନଈକୂଳମାନଙ୍କରେ ଦେଖିବାକୁ ମିଳେ । ସମୁଦ୍ରକୂଳର ଝାଉଁବଣ, ନଈ ମୁହାଣର ହେନ୍ତାଳବନ ଓ ଲୁଣା ଜଙ୍ଗଲ ସବୁ ଏଇ ପ୍ରକାରର । ସମୁଦ୍ରକୂଳର ଜଙ୍ଗଲ ଆମକୁ ଝଡ଼ତୋଫାନରୁ ରକ୍ଷା କରିଥାଏ ।

ଓଡ଼ିଶାର ଜଙ୍ଗଲଗୁଡ଼ିକ ମୂଲ୍ୟବାନ୍ । ଏଥିରେ ଶାଳ, ପିଆଶାଳ, ଶାଗୁଆନ୍, କୁରୁମ, କଙ୍ଗଡ଼ା, ଶିଶୁ, ବାଉଁଶ, ଖଇର ଓ ବେତ ଆଦି ମୂଲ୍ୟବାନ୍ କାଠର ଗଛ ଥାଏ । ଏଠାରୁ କେନ୍ଦୁପତ୍ର, ମହୁ, ଝୁଣା, ଲାଖ, ହରିଡ଼ା, ବାହାଡ଼ା, ଅଁଳା, ଟସର ଖୋସା ଓ ଔଷଧ ପାଇଁ ଦରକାରୀ ଚେରମୂଳୀ ମଧ୍ୟ ମିଳେ ।

## ଜଙ୍ଗଲ ନାଶର କାରଣ ଓ ଅପକାର

ଜଙ୍ଗଲ ନାଶ ପାଇଁ ଅନେକ କାରଣ ରହିଛି । ସେଥିରୁ ବଡ଼ କାରଣଗୁଡ଼ିକ ହେଲା ବ୍ୟବସାୟ ପାଇଁ ଜଙ୍ଗଲ କଟା, ଚୋରା କାଠ ଚାଲାଣ, ପୋଡୁଚାଷ, ସଂଖ୍ୟାରେ ବଢ଼ିଯାଉଥିବା ଲୋକଙ୍କ ପାଇଁ ନୂଆ ଗ୍ରାମ ଓ ସହର ତିଆରି, କଳକାରଖାନା ବସାଇବା, ନଦୀବନ୍ଧ ଯୋଜନା, ଘର ଓ ଘରୋଇ ଉପକରଣର ଅଧିକ ଚାହିଦା, ଖରାଦିନେ ବଣପୋଡ଼ି, ଖଣି ଖୋଳା, ଚରାଭୂଇଁର ଅଧିକ ବ୍ୟବହାର ଇତ୍ୟାଦି । ଗମନାଗମନ ପାଇଁ ରାସ୍ତା ଓ ରେଳପଥ ବଢ଼ିଲେ ଏହା ଶୀଘ୍ର ଶୀଘ୍ର ନଷ୍ଟ ହୋଇଥାଏ ।

ଜଙ୍ଗଲ ଧ୍ୱଂସ ଦ୍ୱାରା ପରିବେଶର ପ୍ରତ୍ୟେକ ଅଂଶ ନିଜ ନିଜର ଅନୁପାତ ହରାଇଥାଆନ୍ତି । ମାଟି ଧୋଇଯାଇ ବଢ଼ି, ଝଡ଼ ତୋଫାନ, ମରୁଡ଼ି ଇତ୍ୟାଦି ହୁଏ । ବଣଜନ୍ତୁଙ୍କ ସଂଖ୍ୟା କମିଯାଏ ଓ କେତେକ ସମୂଳେ ଲୋପ ପାଇଯାଆନ୍ତି । ନୂଆ ନୂଆ ମରୁଭୂମି ଓ ପତିତ ଜମି ଗଢ଼ି ହୋଇଯାଆନ୍ତି ।

## ସାବଧାନତା

ଅନେକ ପ୍ରାକୃତିକ ଅଘଟଣରୁ ବଞ୍ଚିବାକୁ ଜଙ୍ଗଲକୁ ବଞ୍ଚାଇ ରଖିବା ଜରୁରୀ ଅଟେ । ନୂଆ ନୂଆ ଗଛ ଲଗାଇ ନୂଆ ନୂଆ ଜଙ୍ଗଲ ଗଢ଼ିବା ଦରକାର । ଜଙ୍ଗଲ ରକ୍ଷା ଠିକ୍

ଦେଶରକ୍ଷା ପରି ଦରକାରୀ କଥା । ଲୋକେ ଏ କଥା ଧୀରେ ଧୀରେ ବୁଝି ସାବଧାନ ହେଲେଣି । ଏଣୁ ଆମ ଦେଶରେ ‘‘ଚିପ୍‌କୋ ଆନ୍ଦୋଳନ’’, ‘‘ଆପିକୋ ଆନ୍ଦୋଳନ’’ ଓ ‘‘ଗନ୍ଧମାଦନ ସୁରକ୍ଷା ଆନ୍ଦୋଳନ’’ ହୋଇପାରିଛି । ଏସବୁ ବିଷୟରେ ଅଧିକ କଥା ଅଧିକ ପାଠ ପଢ଼ିଲେ ଜାଣି ହେବ ।

## କେତେକ ଜାଣିବା କଥା

୧. ଏକ ହେକ୍ଟର ଜଙ୍ଗଲ ଦ୍ୱାରା ୩.୭ ଟନ୍ ଅଙ୍ଗାରକାମ୍ଳ ବାଷ୍ପ ବ୍ୟବହୃତ ହୋଇ ୨ ଟନ୍ ଅମ୍ଳଜାନ ତିଆରି ହୋଇଥାଏ ।

୨. ପ୍ରତି ସେକେଣ୍ଡରେ ପୃଥିବୀର ଏକ ଏକର ଜଙ୍ଗଲ ନଷ୍ଟ ହେଉଛି ।

୩. ଜଳାଯାଉଥିବା ସବୁ ଘଷିକୁ ଖତ କରିପାରିଲେ ଆମ ଦେଶର ଖାଦ୍ୟ ଅମଳ ୨୩ ନିୟୁତ ଟନ୍ ବଢ଼ିଯାଆନ୍ତା ।

୪. ଓଡ଼ିଶାର କଳାହାଣ୍ଡି, ଫୁଲବାଣୀ ଓ ବଲାଙ୍ଗୀର ଜିଲ୍ଲାରେ ଜଙ୍ଗଲ କଟା ପୂରାପୂରି ନିଷିଦ୍ଧ ହୋଇଛି ।

# ଜଙ୍ଗଲୀ ଜୀବଜନ୍ତୁ

ପଶୁପକ୍ଷୀ ଓ ଜୀବଜନ୍ତୁ ସମସ୍ତଙ୍କୁ ଭଲ ଲାଗନ୍ତି । ଆମେ ଏଥିପାଇଁ ଚିଡ଼ିଆଖାନା, ସର୍କସ୍ ଓ ଜଙ୍ଗଲକୁ ଯାଉ । ଘରେ ମଧ୍ୟ କେତେକ ଜୀବଙ୍କୁ ପୋଷା ମନାଇ ରଖୁ । ଏମାନେ ସବୁବେଳେ କବି, ଭାବୁକ ଓ ଲେଖକମାନଙ୍କୁ ନୂଆ ନୂଆ କଥା ଭାବିବାକୁ ସାହାଯ୍ୟ କରିଥାଆନ୍ତି । ବଣ ଜଙ୍ଗଲର ପଶୁ ଓ ପକ୍ଷୀ ଆମ ପରିବେଶର ସୌନ୍ଦର୍ଯ୍ୟ । ସେମାନେ ଏହାକୁ ରକ୍ଷା କରିବାର ଦାୟିତ୍ୱ ନେଇଥାଆନ୍ତି । ପୃଥିବୀର ସଭ୍ୟତା, ସାହିତ୍ୟ, କଳା ଓ ଧର୍ମ ଏମାନଙ୍କ ଦ୍ୱାରା ପ୍ରଭାବିତ ହୋଇଛି । ଧର୍ମପୁସ୍ତକ, ପଞ୍ଚତନ୍ତ୍ର, ହିତୋପଦେଶ ଓ ଜାତକଗଳ୍ପଗୁଡ଼ିକରେ ପଶୁପକ୍ଷୀମାନଙ୍କୁ ନାୟକ କରାଯାଇଛି ଓ ସେମାନଙ୍କ ପ୍ରତି ଦୟା କରିବାକୁ ଶିକ୍ଷା ଦିଆଯାଇଛି । ଦେବଦେବୀଙ୍କର ବାହନ ହେଉଛନ୍ତି ମୂଷା, ମୟୂର, ହଂସ, ପେଚା, ହାତୀ, ବାଘ, ସିଂହ ଓ ମଇଁଷି ଇତ୍ୟାଦି । ବଣଜନ୍ତୁ ନ ମାରିବା ପାଇଁ ଅନେକ ଜାତିରେ ନିୟମ ରହିଛି । କେଉଁଠି ମୂଷା ଓ ମୟୂର ମାରିବା ମନା ତ, କେଉଁଠି କେବଳ ଜିଅନ୍ତା ମୂଷା ପୂଜା କରିବାକୁ ମନ୍ଦିର ରହିଛି । ଓଡ଼ିଶାର ଜାତି ଭେଦରେ କେହି କେହି ନାଗସାପ, ବିରାଡ଼ି, ପାରା, କୁକୁଡ଼ା ଆଦି ନ ମାରିବାର ବିଧି ରହିଛି । ହିନ୍ଦୁ ମାତ୍ରେ ଗାଈ ମାରନ୍ତି ନାହିଁ । ଗଞ୍ଜାମଜିଲ୍ଲାରେ ଥିବା ବିରଳ କୃଷ୍ଣସାର ମୃଗ ସେଠାକାର ଲୋକଙ୍କ ହେପାଜତ୍‌ରେ ବଞ୍ଚି ରହିଛନ୍ତି ।

ଭାରତର ମୁଖ୍ୟ ଜଙ୍ଗଲୀ ଜନ୍ତୁ ହେଲେ ସିଂହ, ଜାତିଜାତିକା ବାଘ, ହାତୀ, ଭାଲୁ, ବାରହା, କୁଟୁରା, ଗଣ୍ଡା, ଗୟଳ, ଅରଣା ମଇଁଷି, ସମ୍ବର, ନୀଳଗାଈ, ଜାତିଜାତିକା ମୃଗ ଓ ହରିଣ, ବଜ୍ରକାପ୍ତା, ମାଙ୍କଡ଼, କୁମ୍ଭୀର, ଠେକୁଆ, ଝିଙ୍କ ଓ ଅସଂଖ୍ୟ ପ୍ରକାରର ସାପ । ଆମର ଜାତୀୟ ପଶୁ ବାଘ ।

ଓଡ଼ିଶାର ବିଶିଷ୍ଟ ପଶୁ ହେଲେ ଜାତିଜାତିକା କୁମ୍ଭୀର, ଧଳାବାଘ ଓ ସମ୍ବର । ରାଜ୍ୟର ପ୍ରାଦେଶିକ ପଶୁ ହେଲା ସମ୍ବର ।



ଜଙ୍ଗଲୀ ଜୀବଜନ୍ତୁ

## ଜୀବଜନ୍ତୁଙ୍କ କ୍ଷୟ

ମନଇଚ୍ଛା ଜଙ୍ଗଲ କଟା ଓ ଶିକାର ଜଙ୍ଗଲୀ ଜୀବଜନ୍ତୁଙ୍କର ବିପଦ ହୋଇଛି । ଆଗେ ରାଜାମାନେ ଜଙ୍ଗଲ କାଟୁଥିଲେ ଓ ଶିକାର କରୁଥିଲେ । ବିଦେଶୀ ଶାସନ ଅମଳରେ ଏ ସବୁ ବହୁତ ବଢ଼ିଯାଇଥିଲା । ସ୍ୱାଧୀନତା ପରେ ବି ଚାଲିଲା । ଗତ କିଛି ବର୍ଷ ତଳେ ଏ ସବୁ ନ ହେବାକୁ ଆଇନ୍ ହୋଇଛି । କିନ୍ତୁ ଖବର ମିଳେ ଯେ, ଚୋରାଲୁଚାରେ ଜଙ୍ଗଲ କଟା ଓ ଶିକାର ଚାଲିଛି । କାରଣ ହାତୀଦାନ୍ତ, ଗଣ୍ଡା ଶିଙ୍ଗ, ବାଘ ଛାଲ, ହରିଣ ଛାଲ, ସାପ ଚମଡ଼ା, ବେଙ୍ଗ-ଗୋଡ଼, କୁଟୁରା-ମାଂସ, କସ୍ତୁରୀ (ମୃଗନାଭି), ବଜ୍ରକାପ୍ଟା କାତି, କୁମ୍ଭୀର ଚମଡ଼ା ଇତ୍ୟାଦି ଅତି ଲାଭଜନକ ଜିନିଷ । ସେଗୁଡ଼ିକରୁ ରୋଜଗାର କରିବା ଲୋଭ ଥିବା ପର୍ଯ୍ୟନ୍ତ ଜଙ୍ଗଲୀ ଜୀବଜନ୍ତୁଙ୍କୁ ରକ୍ଷା କରିବା କଷ୍ଟ । ଏବେ ସାରା ପୃଥିବୀରେ ହାତୀ ରକ୍ଷା କରିବାକୁ ଗୋଟିଏ ବଡ଼ ସଭା ହୋଇଥିଲା । ଏଥିରେ ଅନେକ ଦେଶ ଭାଗ ନେଇଥିଲେ । ଏହିପରି ସବୁ ଜୀବଜନ୍ତୁଙ୍କ ପ୍ରତି ମଣିଷ ମନରେ ଦୟା ନ ଆସିଲେ ଆଇନ୍ ଥାଇ ମଧ୍ୟ ସେମାନେ ଧୀରେ ଧୀରେ ଲୋପ ପାଇଯିବେ ।

## ଜୀବଜନ୍ତୁଙ୍କ ଉପକାର

ବଣ ଥିଲେ ବଣୁଆ ଜୀବଜନ୍ତୁ ରହନ୍ତି । ସେମାନେ ରହିଲେ ବଣ ରକ୍ଷା ହୁଏ । ବଣ ଯୋଗେ ଜଳ ଓ ମାଟି ସୁରକ୍ଷିତ ରହେ । ଏଣୁ ମଣିଷ ଓ ଅନ୍ୟ ଜୀବ ବଞ୍ଚି ରହନ୍ତି । ଏହା କିପରି ହୁଏ, ଆଗରୁ ଆଲୋଚନା ସରିଛି । ବଣର ହିଂସ୍ର ଜୀବମାନଙ୍କ ଭୟରେ ଜଙ୍ଗଲକଟା ଅଟକିଯାଏ । ସେମାନେ ଖାଇ ବଞ୍ଚିବାକୁ କେତେକ ଛୋଟ ଜୀବ ରହିବା ଦରକାର । ଆଉ କେତେକ ଜୀବ ସିଧାସଳଖ ମଣିଷର ଦରକାରରେ ଆସନ୍ତି । ଏଣୁ ସେମାନେ ମଧ୍ୟ ରହିବା ଦରକାର । ସେମାନେ ନଷ୍ଟ ହେଲେ ବଣ ଉଜୁଡ଼ିଯିବ, ଜଳ ନଷ୍ଟ ହୋଇଯିବ, ମାଟିର ଗୁଣ ଚାଲିଯିବ, ଜଳବାୟୁ ବଦଳିଯିବ ଓ ଫସଲ ହେବ ନାହିଁ । ମଣିଷ ଜାତି ବଞ୍ଚି ରହିବା କଷ୍ଟକର ହେବ ।

ଏମାନଙ୍କୁ ବଞ୍ଚାଇ ରଖିବା ପାଇଁ ଆହୁରି ଅନେକ କାରଣ ରହିଛି । ପଶୁପକ୍ଷୀଙ୍କ ଉପରେ ପରୀକ୍ଷା ଚଳାଇ ମଣିଷ ପାଇଁ ଔଷଧ ତିଆରି ହୁଏ । ପୋଷା ପଶୁଙ୍କ ସହ ସମୟ କଟାଇ ଉଚ୍ଚ ରକ୍ତଚାପ ରୋଗୀର କଷ୍ଟ ଲାଘବ ହୁଏ । କେତେକ ଜନ୍ତୁଙ୍କ ଗତିବିଧିରୁ ଭୂକମ୍ପ ଓ ପାଣିପାଗର ସୂଚନା ମିଳିଯାଇଥାଏ । ସବୁଠୁ ବଡ଼ କଥା ହେଲା ଯେ, ସେମାନେ ମଧ୍ୟ ମଣିଷ ଭଳି ବଞ୍ଚିବାର ଅଧିକାର ନେଇ ଜନ୍ମ ହୋଇଛନ୍ତି । ଜୀବମାନଙ୍କ ଉପରେ ମଣିଷ ମୁରବି ହୋଇଥିବାରୁ, ସେମାନେ କିପରି ବଞ୍ଚି ରହିବେ ଏହା ଆମେ ଦେଖିବା ଆମର ଧର୍ମ ।

## ଆମେ କ'ଣ କରିଛୁ

ସାରା ପୃଥିବୀରେ ବର୍ତ୍ତମାନ ଜାତୀୟ ଉଦ୍ୟାନ, ପ୍ରାଣୀଉଦ୍ୟାନ ଓ ଅଭୟାରଣ୍ୟ କରାଯାଉଛି । ବାଘମାନଙ୍କୁ ରକ୍ଷା କରିବାକୁ ଭାରତରେ ୧୭ଟି ବାଘ-ସଂରକ୍ଷଣ ଯୋଜନା ହୋଇଛି । ଓଡ଼ିଶାର ଶିମିଳିପାଳ ସେଥିରୁ ଗୋଟିଏ । ସିଂହ-ସଫାରୀ, ଗଣ୍ଡା-ସଫାରୀ, ଗଜବିହାର ଓ ମୃଗବିହାର ଇତ୍ୟାଦି କରି ସିଂହ, ଗଣ୍ଡା, ହାତୀ ଓ ମୃଗଙ୍କୁ ନିର୍ଭୟ ଜୀବନ ଦିଆଯାଇଛି । ବଣଜନ୍ତୁ ମାରିବା ନିଷେଧ କରି ଆଇନ୍ ତିଆରି ହୋଇଛି । ତାହା ନ ମାନିଲେ ଦଣ୍ଡର ବ୍ୟବସ୍ଥା ଅଛି । କିନ୍ତୁ ଆମର ପ୍ରଥମେ ଜୀବଜନ୍ତୁଙ୍କୁ ଆଦର କରିବା ଅଭ୍ୟାସଟି ଦରକାର ।

## କିଛି ଜାଣିବା କଥା

୧. ଭାରତର ଆୟତନ ପୃଥିବୀର ଶହେ ଭାଗରୁ ଦୁଇ ଭାଗ । କିନ୍ତୁ ଏଠି ପୃଥିବୀର ଜୀବମାନଙ୍କ ଭିତରୁ ଶହକେ ପାଞ୍ଚୋଟି ଅଛନ୍ତି ।

୨. ଆମ ଦେଶରେ ୬୮ଟି ଜାତୀୟ ଉଦ୍ୟାନ ଓ ୩୬୬ଟି ଅଭୟାରଣ୍ୟ ଅଛି ।

୩. ଆଗରୁ ଥିବା ୨୪ ପ୍ରକାରର ଜୀବଜନ୍ତୁ ଭାରତରୁ ଲୋପ ପାଇଗଲେଣି ।

୪. ଆମ ଦେଶର "କର୍‌ବେଟ୍ ଜାତୀୟ ଉଦ୍ୟାନ" ଏସିଆ ମହାଦେଶରେ ସବୁଠାରୁ ପୁରୁଣା ।

୫. ଓଡ଼ିଶାର ନନ୍ଦନକାନନରେ ପୃଥିବୀର ସବୁଠାରୁ ବେଶୀ ଧଳାବାଘ ଅଛନ୍ତି ।

# ଚଢ଼େଇଙ୍କ କଥା

ଚଢ଼େଇଟିଏ କାହାକୁ ଭଲ ନ ଲାଗେ ? ଜୀବଜଗତ ଭିତରେ ଚଢ଼େଇଙ୍କ କଥା ଅଲଗା । ସେମାନେ ଜଳ, ସ୍ଥଳ ଓ ଆକାଶ ସବୁଠାରେ ଦେଖାଯାଆନ୍ତି । ପୃଥିବୀର ପ୍ରଥମ ଚଢ଼େଇଟି ୧୫୦ ନିୟୁତ ବର୍ଷ ତଳେ ଜନ୍ମ ହୋଇଥିବ ବୋଲି ଅନୁମାନ କରାଯାଇଛି । ଏବେ କୁହାଗଲାଣି ଯେ, ବିରାଟକାୟ ଡାଇନୋସରର ରୂପ ବଦଳି ସେ ଚଢ଼େଇ ପାଲଟିଛି । ଚଢ଼େଇଟିର ଖେଳ ଦେଖିବା ସମୟ କାଟିବାର ଏକ ମଜା ଉପାୟ । ପୃଥିବୀରେ ଯେତେ ପ୍ରକାରର ଚଢ଼େଇ ଅଛନ୍ତି, ସେଥିର ଚାରି ଭାଗରୁ ଭାଗେ ଭାରତରେ ମିଳିବେ । ଭାରତରେ ଯେତେ ଜାତିର ଚଢ଼େଇ ଦେଖାଯାଆନ୍ତି, ସେଥିର ପାଞ୍ଚ ଭାଗରୁ ଭାଗେ କେବଳ ଓଡ଼ିଶାରେ ମିଳନ୍ତି ।

## ଯାଯାବର ଜୀବ

ଚଢ଼େଇଙ୍କ ଗତିବିଧି ମନରେ କୌତୂହଳ ସୃଷ୍ଟି କରେ । ଶୀତ ଅଞ୍ଚଳର ଚଢ଼େଇମାନେ ବେଶୀ ଥଣ୍ଡା ପଡ଼ିବା ଆଗରୁ ସବୁ ବର୍ଷ ଗରମ ଅଞ୍ଚଳକୁ ଯାଆନ୍ତି ଓ ଶୀତ କମିଗଲେ ନିଜ ଅଞ୍ଚଳକୁ ଫେରିଆସନ୍ତି । ଏଣୁ କାର୍ତ୍ତିକ ମାସ ଆରମ୍ଭରୁ ଫାଲ୍ଗୁନ ମାସ ଭିତରେ ଆମେ ଅନେକ ନୂଆ ନୂଆ ଚଢ଼େଇ ଦେଖିବାକୁ ପାଉ । ଚଢ଼େଇଙ୍କର ଏହି ଯିବା ଆସିବାରୁ ପରିବେଶ ବିଷୟରେ ଅନେକ ନୂଆ ନୂଆ ଧାରଣା ମିଳୁଛି । ବିଜ୍ଞାନୀମାନେ ଏ ସବୁ ଚଢ଼େଇ ଧରି ତାଙ୍କ ଗୋଡ଼ରେ ମୁଦି ପିନ୍ଧାଇ ଏ ସବୁ କଥା ସଂଗ୍ରହ କରିପାରୁଛନ୍ତି ।

## ଚଢ଼େଇଙ୍କ ଆଶ୍ରୟ

ଯାଯାବର ଚଢ଼େଇମାନେ ନିର୍ଭୟରେ ଆଶ୍ରୟ ପାଇବାକୁ ଆମ ଦେଶରେ ୨୪ଟି ଅଭୟ ବିହାର ରହିଛି । ଏଥିରୁ ମୁଖ୍ୟ କେତୋଟିର ନାମ ହେଲା ଭରତପୁର, କେଓଲାଦେଓ, ଘାନା, ନଳସରୋବର, କୋଲେରୁ, ରଙ୍ଗନ୍‌ଥିଟ୍ଟୁ,




ଆମ ରାଜ୍ୟ ଚଢ଼େଇ

ଘଟପ୍ରଭା, ପୁଲିକାଟ୍, ବେଦାନ୍ତଗଲ୍ ଓ ଚିଲିକା । ଚିଲିକା ଓଡ଼ିଶାର ଲୁଣାଗୁଣା ହ୍ରଦ ଏବଂ ଚଢ଼େଇମାନଙ୍କ ପାଇଁ ଗୋଟିଏ ସୁବିଧା ଆଶ୍ରୟ । ପକ୍ଷୀବିଜ୍ଞାନୀମାନଙ୍କ ପାଇଁ ଏହାର ମୂଲ୍ୟ ଯଥେଷ୍ଟ । ଏଠାରେ ବର୍ଷଯାକ ୧୫୦ ପ୍ରକାରର ଚଢ଼େଇ ଦେଖାଯାଆନ୍ତି । ସେଥିରୁ ୯୭ଟି ଯାଯାବର । ଏମାନେ ସାଇବେରିଆ, ବୈକାଲ୍ ହ୍ରଦ, କାସ୍ପିଆନ୍ ସାଗର, ରେଜ୍ଜେୟା ହ୍ରଦ, ମଙ୍ଗୋଲିଆ, ଆଫଗାନିସ୍ଥାନ, ନେପାଳ, ଲାଦାଖ୍, ମାନସରୋବର ଓ ଗିଲ୍‌ଗିଟ୍ ଇତ୍ୟାଦି ଦୂର ଜାଗାମାନଙ୍କରୁ ଆସିଥାଆନ୍ତି । ଏ ଦୂରତା ୨୫୦୦ରୁ ୬୦୦୦ କିଲୋମିଟର ପର୍ଯ୍ୟନ୍ତ । ଏଠାରୁ ଚଢ଼େଇମାନେ ୯୦୦ ଫୁଟରୁ ଅଧିକ ଉଚ୍ଚରେ ଉଡ଼ି ଆସିଥାଆନ୍ତି । ସେମାନଙ୍କ ବେଗ ଥାଏ ଘଣ୍ଟାକୁ ୪୮ରୁ ୯୬ କିଲୋମିଟର ।

ହଂସ ଓ ହଂସରାଳି ଜାତିର ୧୦ ପ୍ରକାରର ଚଢ଼େଇ ଚିଲିକାରେ ଦେଖିବାକୁ ମିଳେ । ଏଠାରେ ଥିବା ରାଜଡୁବୁକି, ସମୁଦ୍ର ଡାମରାକୁଆ, କୁରାର, କୁରୁବକ, ଶଙ୍ଖଚିଲ ଓ ଶିପାଳଚିରୀ ଇତ୍ୟାଦି ବିରଳ ଚଢ଼େଇ । ଏ ସବୁକୁ ଛାଡ଼ି ଏଠାରେ ରଙ୍ଗବେରଙ୍ଗର ପ୍ରାୟ ୫୦ ପ୍ରକାରର ଚଢ଼େଇ ସବୁବେଳେ ମିଳନ୍ତି । ତା' ଭିତରେ ଦେଖିବା ଭଳି ଚଢ଼େଇ ହେଲା ''ଏରା ପକ୍ଷୀ ।''

## ଚଢ଼େଇ ଓ ପରିବେଶ

ଚଢ଼େଇମାନେ ହେଲେ ପରିବେଶର ଝାଡୁଦାର ଓ ସାଥୀ । କିନ୍ତୁ ପରିବେଶ ନଷ୍ଟ ହେବାରୁ ସେମାନେ ଲୋପ ପାଇଯାଉଛନ୍ତି । ଜଙ୍ଗଲ ନଷ୍ଟ, ଆଶ୍ରୟ ଅଭାବ ଓ ଶିକାର ଯୋଗେ- ଆମ ଦେଶରେ ଆଉ ଗୋଲାପୀ ହଂସ ବା ହିମାଳୟ-ଗୁଣ୍ଡୁରି ନାହାନ୍ତି । ଯାହା ଆଶଙ୍କା କରାଯାଉଛି, ଗ୍ରେଟ୍ ଇଣ୍ଡିଆନ୍ ବଷ୍ଟାର୍ଡ୍, ଜେରିଡନ୍‌ସ୍‌କୋର୍ସର୍, ମୋନାଲ୍‌ଫିଜାଣ୍ଟ୍ ଓ ଧଳାକଙ୍କ ଇତ୍ୟାଦି ଚଢ଼େଇ ନିକଟରେ ଲୋପ ପାଇଯିବେ । ସେମାନେ କିନ୍ତୁ ଆମର ଅନେକ ଉପକାର କରନ୍ତି । କାଉ, ଶାଗୁଣାଙ୍କ ଯୋଗେ ପରିବେଶର ମଇଳା ଓ ଦୁର୍ଗନ୍ଧ ଦୂର ହୁଏ । ପିକପକ୍ଷୀ ବର୍ଷା ଆସିବାର ସୂଚନା ଦିଏ । ପେଚା ଓ ଚିଲ ଆଦି ଚଢ଼େଇମାନେ ମୂଷା ଓ ପୋକଜୋକ ଖାଇ ଫସଲକୁ ରକ୍ଷା କରନ୍ତି । ପାରା ଚିଠିପତ୍ର ନିଆଅଣା କରେ । ଶୁଆ, ସାରୀ ଇତ୍ୟାଦି ଆମକୁ ଆନନ୍ଦ ଦେଇଥାଆନ୍ତି ।

ଜଙ୍ଗଲ ନଷ୍ଟ ହେବାରୁ ଓଡ଼ିଶାର କେତେକ ବିରଳ ପକ୍ଷୀ ଲୋପ ହେବାକୁ ଯାଉଛନ୍ତି । ସେଗୁଡ଼ିକ ହେଲେ କୋଚିଲାଖାଇ, ଭୃଙ୍ଗରାଜ, ଶଙ୍ଖଚିଲ, କୁରାର, କୁରୁବକ ଓ ରାଜଡୁବୁକି ଇତ୍ୟାଦି । ଏଗୁଡ଼ିକ ବଞ୍ଚାଇ ରଖିବା ଓ ତାଙ୍କର ବଂଶ ବଢ଼ିବାକୁ ଦେବା ଦରକାର । ଆମ ଦେଶରେ ଅଣଚାଶ ପ୍ରକାରର ଚଢ଼େଇଙ୍କୁ ସୁରକ୍ଷା ଦେବା ପାଇଁ ଆଇନ୍ ହୋଇସାରିଛି । କାରଣ, ପରିବେଶ ସହ ଚଢ଼େଇଙ୍କ ସମ୍ପର୍କ ଅଛି । ଯେଉଁଠି ଯେତେ ଚଢ଼େଇ ଦେଖାଯାଆନ୍ତି, ସେଠି ପରିବେଶ ସେତିକି ସୁରକ୍ଷିତ ଓ ନିର୍ମଳ ବୋଲି ଧରିନେବାକୁ ହେବ ।

## ଜାଣିବା କଥା

୧. ଭାରତର ବିଶିଷ୍ଟ ପକ୍ଷୀ ବିଶେଷଜ୍ଞଙ୍କ ନାମ ସ୍ୱର୍ଗତ ସଲୀମ୍ ଅଲୀ ।

୨. ଓଡ଼ିଶାର ବିଶିଷ୍ଟ ପକ୍ଷୀ ବିଶେଷଜ୍ଞ ହେଲେ ଶ୍ରୀ ଉଦୟ ନାରାୟଣ ଦେବ ।

୩. ପୃଥିବୀର ସବୁଠାରୁ ବଡ଼ ଚଢ଼େଇ ଓଟପକ୍ଷୀ ।

୪. ପୃଥିବୀର ସବୁଠାରୁ ଛୋଟ ଚଢ଼େଇ ହେଲା କ୍ୟୁବା ଦେଶର ଗୁଞ୍ଜନପକ୍ଷୀ ।

୫. ଭାରତର ସବୁଠାରୁ ବଡ଼ ପକ୍ଷୀ ସାରସ ।

୬. ଭାରତର ସବୁଠାରୁ ଛୋଟ ଚଢ଼େଇ ଟିକି-ଫୁଲଚୁଇଁ ।

୭. ଭାରତର ଜାତୀୟ ପକ୍ଷୀ ମୟୂର ।

୮. ଓଡ଼ିଶାର ପ୍ରାଦେଶିକ ଚଢ଼େଇ ଭଦଭଦଳିଆ ।

# ମାଟି

ମାଟିକୁ ମାଆ କୁହାଯାଏ । ଖାଲି ଆଖିରେ ଆମେ ଯେଉଁ ପୃଥିବୀକୁ ଦେଖୁ, ତାହା ପ୍ରକୃତରେ ମାଟି । ଅନେକ ଧନ ପ୍ରକୃତି ଏହା ଭିତରେ ସାଇତି ରଖିଛି । ଏହା ଉପରେ ସବୁ ଜୀବଜନ୍ତୁ ଓ ଗଛଲତା ରହିଛନ୍ତି । ଆମେ ଯାହା କିଛି ପାଉ ଓ ବ୍ୟବହାର କରୁ, ସବୁ ଏଇ ମାଟିରୁ ଜାତ ।

ବିଭିନ୍ନ ପ୍ରକାରର ଶିଳା ବା ପଥର କ୍ଷୟ ହୋଇ ମାଟି ତିଆରି ହୋଇଛି । ଏଥିରେ ଜୀବମାନଙ୍କର ଅଂଶ, ଧାତୁ, ଧାତବ ଲବଣ, ବାଲି, ପଟୁ, କାଦୁଅ, ଜଳ ଓ ବାୟୁ ମିଶି ରହିଛି । ଏଥିରେ ଥିବା ଧାତବ ଲବଣଗୁଡ଼ିକ ଗଛଲତାଙ୍କର ଆହାର । ସେମାନେ ବଞ୍ଚି ଆମକୁ ଆହାର ଯୋଗାନ୍ତି । ଏହି ମାଟି ପ୍ରଥମେ କିପରି ହେଲା ତାହା ଗୋଟିଏ ଜଟିଳ କଥା । ବିଜ୍ଞାନର ବହୁ କଥା ନ ପଢ଼ିଲେ ବୁଝିହେବ ନାହିଁ । କିନ୍ତୁ ଯେତିକି ମାଟି ତିଆରି ହୋଇ ଗୋଟିଏ ଜାଗାରେ ଜମା ହେବାକୁ ଚାରିଶହ ବର୍ଷ ଲାଗେ, ସେତିକି ମାଟି କ୍ଷୟ ହେବାକୁ ମାତ୍ର ଚାରିବର୍ଷ ଲାଗେ । ବିଭିନ୍ନ ଜାଗାର ପରିବେଶ ଅନୁସାରେ ସେଠାକାର ମାଟିର ଗୁଣ ଅଲଗା ଅଲଗା ।

ମାଟିରେ ଲୁହାଅଂଶ ଅଧିକ ଥିଲେ ମାଟି ଲାଲ୍ ହୁଏ ଏବଂ ଜୈବ ଅଂଶ ବେଶୀ ଥିଲେ କଳା ହୁଏ । ଠାଏ ମାଟିରେ ଅମ୍ଳଭାଗ ବେଶୀ ହେଲେ, ଅନ୍ୟଠାରେ ଖାର ଅଂଶ ବେଶୀ ହୋଇପାରେ । ତେଣୁ ମାଟି କେଉଁଠି ଉର୍ବର ତ', କେଉଁଠି ଫସଲ ପାଇଁ ଦରକାରୀ ନୁହେଁ । ଉର୍ବର ମାଟିର ଗୁଣ ହେଲା ଯେ, ସେ ଅଧିକ ଜଳ ଧରି ରଖେ ।

## ମାଟିର କ୍ଷୟ

ଜଙ୍ଗଲ ନଷ୍ଟ ହେଲେ ଭୂଇଁ ଟାଙ୍ଗରା ହୋଇଯାଏ । କିଛି ବାଧା ନ ଥିବାରୁ ପାଣି, ପବନ ଓ ଉତ୍ତାପ ମାଟିକୁ ସହଜରେ କ୍ଷୟ କରନ୍ତି । ଖଣିଖୋଳା, ନଦୀବନ୍ଧ ତିଆରି, ଚରାଭୂଇଁର ଅଧିକ ବ୍ୟବହାର, ପୋଡୁଚାଷ ଓ ଭୁଲ୍ ଚାଷ ପ୍ରଣାଳୀ ଦ୍ୱାରା ମାଟି ମଧ୍ୟ କ୍ଷୟ ହୋଇଥାଏ । ଗୋଟିଏ ଜମିର ଉପର

ମାଟି ସମାନଭାବେ ପରସ୍ତ ପରସ୍ତ ହୋଇ ଧୋଇଯାଇପାରେ । ଏଣୁ ଉର୍ବରତା କମିଯାଏ । ଧୀରେ ଧୀରେ ମାଟି ଉପରେ କଟାଦାଗ ପରି ନାଳୀ ଗଢ଼ି ଉଠେ । ଏହା ପରେ ସେହି ମାଟି ଧୋଇଯିବା ଆହୁରି ଶୀଘ୍ର ହୁଏ । କାଳକ୍ରମେ ସେଠାରେ ଗହୀରିଆ ନାଳଟିଏ ହୋଇଯାଏ । ଏହି ଅବସ୍ଥାକୁ ଆସିଲେ ମାଟି ଚାଷ ପାଇଁ ଅଦରକାରୀ ହୋଇପଡ଼େ ।

ଢାଲୁ ଜମିରେ ଗଛଲତା ନ ଥିଲେ ଓ ବର୍ଷାପାଣିରେ ସୁଅ ଥିଲେ ମାଟି ଶୀଘ୍ର ଶୀଘ୍ର କ୍ଷୟ ହୁଏ । ଉତ୍ତର ଭାରତରେ ବର୍ଷାଦିନେ ମାଟି ଅତଡ଼ା ଖସିବା ଆମେ ଶୁଣିଥାଉ । ଏହା ଏକପ୍ରକାର ମାଟିର କ୍ଷୟ । ବଢ଼ିରେ ସୁଅ ଜୋର୍ ଥିଲେ ନଈ ମଧ ଦୁଇ ପାଖର ନରମ ମାଟିକୁ ତାଡ଼ି ନେଇଥାଏ । ଯେଉଁଠି ବର୍ଷା ନାହିଁ, ସେଠି ମାଟି ଶୁଖିଲା ଓ ଗଛଲତା ନ ଥାଏ । ସେଠାରେ ମାଟି ଶୁଖି ଧୂଳି-ବାଲି ଆକାରରେ ଥାଏ । ଜୋର୍‌ରେ ପବନ ହେଲେ, ଏହା ଝଡ଼ରେ ବହୁ ଦୂରକୁ ଉଡ଼ିଯିବାରୁ ସେ ଜାଗାର ମାଟି କ୍ଷୟ ହୁଏ । ବିଶେଷ କରି ମରୁଭୂମିରେ ଏପରି ଘଟିଥାଏ । ଘାସ ଥିବା ଚରାଭୂଇଁରେ ମାଟିର କ୍ଷୟ ଅଲଗା ପ୍ରକାରେ ହୁଏ । ସେଠାରେ ବାରମ୍ବାର ଗୋରୁଗାଈ ଚରାଇଲେ ମାଟି ଉପରେ ଥିବା ଘାସର ଘୋଡ଼ଣିଟି ନଷ୍ଟ ହୋଇଯାଏ । ଉଭୟ ଜଳ ଓ ବାୟୁ ସେଠାକାର ମାଟିକୁ ସୁବିଧାରେ କ୍ଷୟ କରିଥାଆନ୍ତି । ଫଳରେ ଏସବୁ ଜାଗାରୁ ମାଟିର ଜୈବ ଅଂଶ ଓ ଉର୍ବରତା ନଷ୍ଟ ହୁଏ ।

## ଫଳାଫଳ

ମାଟି କ୍ଷୟ ହେଲେ ମରୁଡ଼ି ଓ ବଢ଼ି ହୁଏ । ଜଳାଶୟ, ନଈ ଓ ହ୍ରଦ ସବୁ ଧୀରେ ଧୀରେ ପୋତି ହୋଇଯାଏ । ନଦୀବନ୍ଧର ଜଳଭଣ୍ଡାରଗୁଡ଼ିକର ଆୟୁଷ କମିଯାଏ । ଜଳ ସଞ୍ଚୟର ସୁଯୋଗ କମିଯାଇ ଜଳସେଚନର ସୁବିଧା ହୋଇପାରେ ନାହିଁ । ନଈର ଉପର ମୁଣ୍ଡରେ ଜଙ୍ଗଲ ଥିଲେ ଏ ସବୁ କ୍ଷତିରୁ ରକ୍ଷା ମିଳିପାରେ ।

## ମାଟି କିପରି ରକ୍ଷା ହେବ

ଏଥିପାଇଁ ଅନେକ ଉପାୟ ରହିଛି । ମାଟି କିପରି କ୍ଷୟ ହେଉଛି ଦେଖି, ଉପାୟ ଠିକ୍ କରାଯାଏ । ପାହାଡ଼ିଆ ଅଞ୍ଚଳରେ ଥାକ ଥାକ କରି କିଆରି

କଲେ ଓ ସେଥିରେ ଫସଲ କଲେ ମାଟି କ୍ଷୟ ହେବ ନାହିଁ । ପାହାଡ଼ିଆ ଝରଗୁଡ଼ିକରେ ଆଡ଼ିବନ୍ଧ କଲେ ସୁଅର ବେଗ କମିଯାଏ ଓ ମାଟି କ୍ଷୟ ହୁଏ ନାହିଁ । ପାହାଡ଼ ଉଚ୍ଚଭୂଇଁର ଉପର ଅଂଶରେ ଜଙ୍ଗଲ ଓ ଘାସ ବେଶୀ ରଖାଯାଇପାରିଲେ ମଧ୍ୟ ମାଟିର କ୍ଷୟ ଅଟକିପାରିବ । ଅମଳ ବେଳେ ଶସ୍ୟ ଗଛଗୁଡ଼ିକୁ ମୂଳରୁ କିଛି ଛାଡ଼ି କାଟିଲେ, ବଳିଥିବା ମୂଳଖୁଣ୍ଟା ମାଟି ଧୋଇବା ବନ୍ଦ କରିଥାଏ । ଜମିର ଅବସ୍ଥା ଦେଖି ଚାଷର ପ୍ରକାର ଠିକ୍ କରିବା ଦରକାର । ଠାଏ ଠାଏ ଜମି ଉପରେ ନଡ଼ା ଓ ତାଳପତ୍ର ଘୋଡ଼ାଇ ରଖି ମାଟିର କ୍ଷୟ ଅଟକାଇ ଦିଆଯାଇଥାଏ ।

ମାଟିରେ ସାର ବ୍ୟବହାର କରି ମାଟିର କ୍ଷୟ ହୋଇଥିବା ଗୁଣକୁ ପୂରଣ କରି ହୁଏ । ବଦଳାଇ ବଦଳାଇ ପ୍ରତିବର୍ଷ ଅଲଗା ଅଲଗା ଫସଲ କଲେ ମଧ୍ୟ ଉପକାର ମିଳେ । ଆଧୁନିକ ଚାଷ-ନିୟମରେ ଏହା କୁହାଯାଇଛି । ନୂଆ ଜଙ୍ଗଲ ତିଆରି, ବଳକା ଜଙ୍ଗଲର ରକ୍ଷା ଓ ଚରାଭୂଇଁକୁ ଦେଖିଚାହିଁ ବ୍ୟବହାର କଲେ ମାଟିର କ୍ଷୟକୁ ଅଟକାଇ ହେବ ।

ଆମ ଦେଶ ଚାଷ ଉପରେ ନିର୍ଭର କରେ । ତେଣୁ ମାଟିର ସୁରକ୍ଷା ଓ ଯତ୍ନ ଖୁବ୍ ଦରକାର । ଏଥିପାଇଁ ସରକାର ବହୁ ଯତ୍ନ କରୁଛନ୍ତି । ବିଜ୍ଞାନୀମାନେ ଗବେଷଣା ମଧ୍ୟ କରୁଛନ୍ତି । ମାଟି ଉପରେ ସମୁଦାୟ ପରିବେଶଟି ରହିଛି । ଯାହାର ଜୀବନ ଅଛି, ସେ ମାଟି ଉପରେ ନିର୍ଭର କରିବାକୁ ବାଧ୍ୟ । ଏଣୁ ପରିବେଶକୁ ରକ୍ଷା କରିବାକୁ ହେଲେ, ମାଟିକୁ ରକ୍ଷା କରିବା ଦରକାର ।

## କେତେକ ସତକଥା

୧. ଗୋଟିଏ ଛୋଟ ପରିବାର ପାଇଁ ଘର ତିଆରି ହେବାକୁ ୧୨୦ ଟନ୍ ମାଟି ଦରକାର ହୁଏ ।

୨. ଆମ ଦେଶରେ ପ୍ରତି ଛ' ମାସରେ ଯେତେ ମାଟି ଧୋଇଯାଏ, ସେଥିରେ ଦେଶର ସମସ୍ତଙ୍କ ପାଇଁ ଘର ତୋଳିବାକୁ ଇଟା ତିଆରି ହୋଇପାରନ୍ତା ।

୩. ଓଡ଼ିଶାର ଶହକେ ଷାଠିଏ ଭାଗ ଜମିରେ ମାଟିର ଅମ୍ଳ ଅଂଶ ଦରକାର ଅପେକ୍ଷା ଅଧିକ ।

# ବାୟୁ

ଜୀବଜଗତ ବାୟୁ ଯୋଗେ ବଞ୍ଚିଛି । ଏହାର ଅନ୍ୟ ନାମ 'ପ୍ରାଣ' । ଆଗକାଳରେ ବୈଦ୍ୟମାନେ ଏହାକୁ 'ଆୟୁ' କହିଛନ୍ତି । ଆମେ ଶ୍ୱାସକ୍ରିୟାରେ ବାୟୁ ବ୍ୟବହାର କରୁ । ଏହା ବନ୍ଦ ହୋଇଗଲେ ପ୍ରାଣ ଚାଲିଯାଏ ବା ଆୟୁ ପୂରିଯାଏ । ଆମେ ବାୟୁରୁ ଅମ୍ଳଜାନ ଗ୍ରହଣ କରୁ । ତାହା ଆମ ଶରୀର ଭିତରେ ବିଭିନ୍ନ କାମ କରିସାରି ଅଙ୍ଗାରକାମ୍ଳ ହୋଇ ବାହାରେ । ଗଛଲତା ତାହାକୁ ଗ୍ରହଣ କରନ୍ତି ଓ ନିଜ ଖାଦ୍ୟ ତିଆରି କରିସାରି ପୁଣି ଅମ୍ଳଜାନ ଛାଡ଼ନ୍ତି । ଅନେକ ଗଛ ପାଇଁ ଯବକ୍ଷାରଜାନ ମଧ ଖୁବ୍ ଦରକାରୀ । ଏଣୁ ବାୟୁର ସବୁ ଅଂଶ ଜୀବଜଗତ ପାଇଁ ଦରକାର । ଏହା ପରିବେଶକୁ ଜୀବନ୍ତ କରି ରଖିଛି । ନ ଖାଇ କିଛି ଦିନ ବଞ୍ଚି ହେବ । କିନ୍ତୁ ବାୟୁ ନ ଥିଲେ କିମ୍ବା ବାୟୁ




ବାୟୁ, ଗଛ, ପଶୁ ଓ ମଣିଷର ସଂପର୍କ

ଥାଇ ମଧ୍ୟ ସେଥିରେ ଅମ୍ଳଜାନ ନ ଥିଲେ ଜୀବଜଗତ କେତୋଟି ମିନିଟ୍‌ରେ ଶବଜଗତ ହୋଇଯିବ । ଆମ ବାୟୁମଣ୍ଡଳରେ ଅମ୍ଳଜାନ ଶହକେ ଏକୋଇଶ ଭାଗ ପାଖାପାଖି ଥାଏ ।

## ବାୟୁ କିପରି ପ୍ରଦୂଷିତ ହୁଏ

କଳକାରଖାନା, ରେଳଗାଡ଼ି, ବସ୍, ଟ୍ରକ୍ ଓ ଅନ୍ୟ ଛୋଟ ଛୋଟ ଯାନ ଓ ରୋଷେଇଘରୁ କାଠ, କୋଇଲା ବା ଜାଳେଣି ତେଲର ଧୂଆଁ ବାହାରି ବାୟୁରେ ମିଶିବାରୁ ଏହା ଦୂଷିତ ହୁଏ । ଏସବୁ ଧୂଆଁରେ ଅଙ୍ଗାର କଣିକା, ଧୂଳିକଣା, ଅଙ୍ଗାରକାମ୍ଳ ଓ ଅନ୍ୟ କେତେକ ବିଷାକ୍ତ ବାଷ୍ପ ମିଶି ରହିଥାଏ । ଅମ୍ଳଜାନ ପାଇବା ପାଇଁ ଆମେ ନାକବାଟେ ବାୟୁ ନେବାବେଳେ ଏ ସବୁ ଆମ ଦେହ ଭିତରକୁ ଯାଇଥାଏ । ଏଗୁଡ଼ିକ ବାୟୁର ଅନ୍ୟାନ୍ୟ ଅଂଶମାନଙ୍କଠାରୁ ଓଜନିଆ । ତେଣୁ ମାଟିକୁ ଲାଗି ରହିଥିବା ବାୟୁମଣ୍ଡଳରେ ଥାଆନ୍ତି । ତେଣୁ ସେସବୁ ଆମେ ଦେହ ଭିତରକୁ ନେବାକୁ ବାଧ୍ୟ । ଏଗୁଡ଼ିକ ଅନେକ କାରଣରୁ ଆମର ଆୟୁଷ ହାନି ପାଇଁ ଦାୟୀ । ବଡ଼ କଥାଟି ହେଲା— ଏସବୁ ବାୟୁରେ ଅଧିକ ରହିଲେ ଅମ୍ଳବର୍ଷା ହୋଇ ପରିବେଶର କ୍ଷତି କରନ୍ତି ।

## ଅମ୍ଳବର୍ଷା କ'ଣ ?

କଳକାରଖାନା ଓ ଯାନଗୁଡ଼ିକରୁ ଯେଉଁସବୁ ବିଷାକ୍ତ ବାଷ୍ପ ବାହାରନ୍ତି, ସେଗୁଡ଼ିକ ଯୋଗେ ବାୟୁମଣ୍ଡଳରେ ଅନେକ ରାସାୟନିକ ଘଟଣା ଘଟେ । ଉପରେ ଭାସି ବୁଲୁଥିବା ମେଘ, କରକା ଓ କୁହୁଡ଼ିରେ ଏସବୁ ମିଶିଯାଆନ୍ତି । ଫଳରେ ସେସବୁରେ ଅମ୍ଳଭାଗ ବଢ଼ିଯାଏ । ତାହା ବର୍ଷା ଆକାରରେ ମାଟିକୁ ଆସି ନଈ, ନାଳ, ଝରଣା ଓ ହ୍ରଦରେ ମିଶେ । ଏହି ବର୍ଷାକୁ ଅମ୍ଳବର୍ଷା କହନ୍ତି । ତାହା ଫସଲ ପାଇଁ ହାନିକର । ତା'ଯୋଗେ ଗଛମାନଙ୍କର ଫଳ ଧରିବା ବଳ କମିଯାଏ । ଅମ୍ଳମିଶା ଜଳ ମାଟିରେ ଥିବା ବଳକାରକ ଧାତୁ-ରସଗୁଡ଼ିକୁ ଶୀଘ୍ର ଧୋଇନେଇଯାଏ । ନଈ, ପୋଖରୀରେ ସେସବୁ ମିଶି ମାଛ ଓ ଅନ୍ୟ ଜଳଜୀବଙ୍କର କାଳ ହୁଏ । ଅମ୍ଳବର୍ଷା ଥରକୁ ଥର ହେଲେ ଘରର କାଛଗୁଡ଼ିକର ବଳ କମିଯାଏ । କୋଠାଘରଗୁଡ଼ିକର ମଧ୍ୟ ଆୟୁଷ କମିଯାଇଥାଏ ।

## ପ୍ରଦୂଷିତ ବାୟୁର ଅପକାର

ବାୟୁମଣ୍ଡଳର ଉପରିଭାଗରେ "ଓଜୋନ୍" ନାମକ ଏକ ବାଷ୍ପର ଆସ୍ତରଣ ରହିଛି । ଏହା ମାଟିର ପାଖାପାଖି ଥିଲେ ଅନେକ କ୍ଷତି କରନ୍ତା । କିନ୍ତୁ ଦୂରରେ ଥିବାରୁ ଆମର ଉପକାର କରୁଅଛି । ସୂର୍ଯ୍ୟକିରଣରେ ଗୋଟିଏ ବିଷାକ୍ତ କିରଣ ଅଛି, ଯାହାର ନାମ "ଅତି-ବାଇଗଣି ରଶ୍ମି" । ଏହାକୁ ଓଜୋନ୍ ଶୋଷି ନେଇଥାଏ । ତେଣୁ ଆମେ ତାହାର ଅପକାରରୁ ରକ୍ଷା ପାଉ । ବାୟୁ ପ୍ରଦୂଷିତ ହେବାରୁ ଏହି ଓଜୋନ୍‌ର ଘୋଡ଼ଣିରେ ଠାଏ ଠାଏ ଫାଟ ହେଲାଣି । ଅତି-ବାଇଗଣି ରଶ୍ମିରୁ କିଛି ପୃଥିବୀକୁ ଚାଲି ଆସୁଛି । ଏଣୁ ଏହାର ଫଳ ଆମ ପାଇଁ କ୍ଷତିକାରକ ।

ଆଜିକାଲି କୃତ୍ରିମ ଉପାୟରେ ଅଲଗା ପ୍ରକାରର ଘର ତିଆରି କରି ତା'ଭିତରେ ଗଛଲତାର ଚାଷ ଓ ସେ ବିଷୟରେ ଗବେଷଣା ହେଉଛି । ତା' ଭିତରେ ସାଧାରଣ ଜମିର ସବୁ ପରିବେଶ ରଖାଯାଇଥାଏ । ଏପରିକି ଚାଷଜମିରେ ଗଛଲତା ପାଇଁ ଯେଉଁସବୁ ବିପଦ ଥାଏ, ସେସବୁ ନ ଘଟିବାର ସୁବିଧା ଏ ପ୍ରକାରର ଘରେ ଥାଏ । ଏହାକୁ 'ଗ୍ରୀନ୍ ହାଉସ୍' କହନ୍ତି । ଓଡ଼ିଆରେ ଏହାର ଅର୍ଥ "ସବୁଜ କୋଠରି" । ବାୟୁମଣ୍ଡଳରେ ଏପରି ଏକ ବାଷ୍ପୀୟ ସ୍ତର ଅଛି, ଯାହାକି ପୃଥିବୀର ପରିବେଶକୁ ଗ୍ରୀନ୍-ହାଉସ୍ ପରି ସୁରକ୍ଷା ଦିଏ । ସେ ସ୍ତରଟି ଅଳ୍ପ ଉଚ୍ଚରେ ଅଛି । ସେଥିରେ ଅଙ୍ଗାରକାମ୍ଳ ଓ ଆଉ କେତେକ ଓଜନିଆ ବାଷ୍ପ ଥାଆନ୍ତି । ସେଗୁଡ଼ିକ ପୃଥିବୀ ଉପରର ତାପକୁ ରକ୍ଷା କରନ୍ତି । ଏଗୁଡ଼ିକ ନ ଥିଲେ ପୃଥିବୀ ବରଫ ପରି ଥଣ୍ଡା ହୋଇଥାଆନ୍ତା । କିନ୍ତୁ ଏଗୁଡ଼ିକ ଅଧିକ ହୋଇଗଲେ ତାପ ଅଧିକ ହୋଇଯାଏ । ବାୟୁ ପ୍ରଦୂଷଣ ସକାଶେ ଏଗୁଡ଼ିକର ପରିମାଣ ବଢ଼ିଯାଉଛି । ଫଳରେ ତାପ ଦରକାରରୁ ଅଧିକ ହୋଇଚାଲିଛି । ଏ ଘଟଣାକୁ ଗ୍ରୀନ୍-ହାଉସ୍ ପ୍ରଭାବ କହନ୍ତି । ଏହି ପ୍ରଭାବର ଫଳ ହେଲା, ଗଛଲତାରୁ ଫଳ କମିଯିବ, ମଣିଷର ଆୟୁଷ କମିଯିବ । ସମୁଦ୍ର ଜଳ ତାତିଗଲେ ଫୁଲିଉଠିବ ଓ ସ୍ଥଳଭାଗରୁ କିଛି ବୁଡ଼ିଯାଇପାରେ । ପାଣିପାଗ ମଧ୍ୟ ବଦଳି ଯାଇପାରେ ।

ଖାଲି ଏତିକି ନୁହେଁ । ରେଫ୍ରିଜରେଟର୍, ଶୀତତାପ-ନିୟନ୍ତ୍ରକ ଯନ୍ତ୍ର ଓ ପ୍ଲାଷ୍ଟିକ୍ କାରଖାନାଗୁଡ଼ିକର ବାଷ୍ପ ସିଧାସଳଖ ବାୟୁରେ ମିଶୁଛି । ଏସବୁ ଚର୍ମ-କର୍କଟ ରୋଗ କରେ ବୋଲି କେତେକଙ୍କ ମତ । ବାୟୁରେ ଗନ୍ଧକାମ୍ଳ ଭାଗ ବଢ଼ିଗଲେ ଲୋକେ ରୁଦ୍ଧଶ୍ୱାସ ହୋଇ ମରନ୍ତି । ପିଲାମାନେ ଠିକ୍‌ଭାବେ ନିଶ୍ୱାସ ନେଇପାରନ୍ତି ନାହିଁ । ତାଙ୍କ ଫୁସ୍‌ଫୁସ୍ ରୋଗୀ ହୁଏ । ପ୍ରଦୂଷିତ ବାୟୁର ବିଷାକ୍ତ ପ୍ରଭାବରେ ହୃତ୍‌ପିଣ୍ଡ, ଗଳା, ନାକ, ଆଖି ଓ ସ୍ନାୟୁଗୁଡ଼ିକ ମଧ୍ୟ ରୋଗୀ ହୋଇପାରନ୍ତି ।

# ଶବ୍ଦ-ପ୍ରଦୂଷଣ

ମଣିଷ କାନ ଦେଇ ଶୁଣେ । କାନ ଗୋଟିଏ ନରମ ପରଦା ଥିବା ଯନ୍ତ୍ର । ଏହା କେତେ ଉଚ୍ଚସ୍ୱରର ଶବ୍ଦ ସହିପାରିବ ଓ କେତେ ନୀଚ ସ୍ୱରର ଶବ୍ଦ ଶୁଣିପାରିବ, ତା'ର ସୀମା ରହିଛି । ଶବ୍ଦ ଦରକାରଠାରୁ ଧୀର ହେଲେ ଶୁଣିହେବ ନାହିଁ । ମାତ୍ର କାନର ସହିବାଠାରୁ ଅଧିକ ଜୋର୍‌ରେ ଶବ୍ଦ ହେଲେ ଶରୀର ଓ ମନର ଅନେକ କ୍ଷତି ହେବ । ସାଧାରଣ କଥାବାର୍ତ୍ତାବେଳେ ଉଚ୍ଚସ୍ୱରର ଶବ୍ଦ ବାଧା ଦେଇଥାଏ । ଏହାଦ୍ୱାରା ମନର ଧୈର୍ଯ୍ୟ ମଧ୍ୟ ନଷ୍ଟ ହୋଇଥାଏ ।

ଉଚ୍ଚସ୍ୱରର ଗୁଡ଼ିଏ ଶବ୍ଦକୁ କୋଳାହଳ କହନ୍ତି । ଏହା ମଣିଷର ଅନେକ ରୋଗର କାରଣ । ସେଗୁଡ଼ିକ ହେଲା ରକ୍ତଚାପ, କ୍ଷୁଧାନାଶ, ଖାଦ୍ୟନଳୀରେ ଘା', ମୁଣ୍ଡବ୍ୟଥା, ଚିଡ଼ିଚିଡ଼ା ପ୍ରକୃତି ଓ ଶ୍ୱାସରୋଗ ଇତ୍ୟାଦି । ସବୁବେଳେ କୋଳାହଳ ଭିତରେ ରହିଲେ ହାଲିଆ ଲାଗିବା, ରକ୍ତ କମିଯିବା ଓ ଓଜନ କମିଯିବା ଇତ୍ୟାଦି ଘଟିପାରେ । ପେଟରେ ପିଲା ଥିବା ସ୍ତ୍ରୀଲୋକଟି ଏଥିରେ ଅନେକ କ୍ଷତି ସହିପାରେ । ପେଟର ପିଲାଟି ଗଢ଼ିହେବାରେ ଭୁଲ୍‌ଭଟକା ରହିଯାଇପାରେ । ବେଳେବେଳେ ସେ ପିଲାଟି ପେଟ ଭିତରେ ମରିଯାଇଥାଏ ।

ଯେଉଁଠି ବେଶୀ କଳକାରଖାନା ଥାଏ, ସେଠାରେ ସବୁବେଳେ କୋଳାହଳ ହେଉଥିବାରୁ ସେଠାକାର ଲୋକେ ଏକ ପ୍ରକାରର କାନ-ରୋଗ ଭୋଗନ୍ତି । ଏ ରୋଗୀମାନେ ସବୁବେଳେ କାନରେ ଗୁଣୁଗୁଣୁ ଶବ୍ଦ ଶୁଣୁଥାଆନ୍ତି । ନିର୍ଜନ ଜାଗାକୁ ଗଲେ ମଧ୍ୟ ତାଙ୍କ କାନରେ ଏପରି ହେଉଥାଏ । ଏହି ରୋଗ ଲୋକକୁ ଶୁଆଇଦିଏ ନାହିଁ । ଏ ରୋଗର ଚିକିତ୍ସା ମଧ୍ୟ ନାହିଁ । ଅନବରତ ଗାଡ଼ି ମଟର ଶବ୍ଦଯୋଗେ ସହର-ବଜାରର ଲୋକେ ମଧ୍ୟ ଏପରି ରୋଗ ଭୋଗିପାରନ୍ତି । ଯେଉଁଠି ରାସ୍ତାକଡ଼ରେ ଧାଡ଼ି ଧାଡ଼ି ବଡ଼ ବଡ଼ ଗଛ ଥାଏ, ସେଠାରେ ଶବ୍ଦ ପ୍ରଦୂଷଣର ଖରାପ ପ୍ରଭାବରୁ କିଛି ପରିମାଣରେ ରକ୍ଷା ମିଳିଥାଏ ।

କେବଳ ମଣିଷ ନୁହେଁ, ପଶୁପକ୍ଷୀମାନେ ମଧ୍ୟ କୋଳାହଳ ଯୋଗେ ଅଶାନ୍ତି ଭୋଗ କରନ୍ତି । କୋଳାହଳମୟ ପରିବେଶରେ ଥିବା ପଶୁପକ୍ଷୀମାନଙ୍କର ଅଧିକ ସଂଖ୍ୟାରେ ବିକୃତ ଛୁଆ ଜନ୍ମ ହୁଅନ୍ତି ବୋଲି ଜଣାଯାଇଛି । ଏଣୁ ଚିଡ଼ିଆଖାନାକୁ ବୁଲି ଯିବାବେଳେ ସାଙ୍ଗରେ ଟ୍ରାଞ୍ଜିଷ୍ଟର୍ ରେଡ଼ିଓ ନେବା କିମ୍ବା ଟେକା ଗୋଡ଼ି ପକାଇ ଜନ୍ତୁମାନଙ୍କୁ ଉତ୍ତେଜିତ କରିବା ଠିକ୍ ନୁହେଁ ।



ଶବ୍ଦ ପ୍ରଦୂଷଣ

## ଶବ୍ଦ ପ୍ରଦୂଷଣ କିପରି ହୁଏ

ସହରଗୁଡ଼ିକରେ ଉଚ୍ଚ ସ୍ୱରର ଶବ୍ଦ ବା କୋଳାହଳ ସୃଷ୍ଟି ପାଇଁ ଅନେକ କାରଣ ଥାଏ । ରେଳ, ମଟର ଓ ଅନ୍ୟାନ୍ୟ ଗାଡ଼ିଗୁଡ଼ିକର ଯାତାୟାତ ଓ

ସିଟି ବଜାଇବା ଏଥିରୁ ଗୋଟିଏ । ଏହି ସ୍ୱର ରେଳଷ୍ଟେସନ୍ ଓ ବସ୍‌ଷ୍ଟାଣ୍ଡ ନିକଟରେ ସବୁଠାରୁ ଅଧିକ । କାରଣ ଏଠାରେ ଅନେକ ଲୋକ ଜମା ହୋଇ ପାଟିତୁଣ୍ଡ ହୁଏ ଏବଂ ବିଭିନ୍ନ ହକର୍ ଓ ବୁଲାବିକାଳିମାନେ ଅନବରତ ପାଟି କରୁଥାଆନ୍ତି । କଳକାରଖାନାଗୁଡ଼ିକ ଚାଲୁଥିବାବେଳେ ବହୁ ପ୍ରକାରର ଶବ୍ଦ ହୋଇଥାଏ । ପର୍ବପର୍ବାଣି, ମେଳା-ମଉଛବ ଆଦିରେ ଡାକବାଜି ଯନ୍ତ୍ରରେ ସଙ୍ଗୀତ ପ୍ରଚାର ହେଉଥାଏ । ସଭାସମିତି, ରାସ୍ତା ଉପରେ ସିନେମା ଓ ଭିଡ଼ିଓ ଚଳାଇବା ଏବଂ ଗାଡ଼ିମଟର ଧରି ବ୍ୟବସାୟଗୁଡ଼ିକର ପ୍ରଚାର କରିବା ଯୋଗେ କୋଳାହଳ ଉପୁଜିଥାଏ ।

## କିପରି ଏହା ବନ୍ଦ ହେବ

ଶବ୍ଦ କରୁଥିବା ଯନ୍ତ୍ର ଓ ଗାଡ଼ିଗୁଡ଼ିକର ବ୍ୟବହାର ଯେତେ କମ୍ କରିଦେଇ ହେବ, ତାହା ଭଲ । ଏଗୁଡ଼ିକର ଅଧିକ ବ୍ୟବହାର ଦ୍ୱାରା ଯାହା କ୍ଷତି ହୁଏ, ତାହା ସମସ୍ତଙ୍କୁ ଜଣାଇ ସଚେତନ କରିବା ଦରକାର । ସଭାସମିତି କରି, ତାଲିମ୍ ଦେଇ ବା ବିଦ୍ୟାଳୟରେ ପଢ଼ାଇ ଏହା କରିହେବ । ଲୋକମାନେ କୋଳାହଳର ଅପକାର ବୁଝିପାରିଲେହିଁ ଏହା ବନ୍ଦ ହେବ । ଅତୀତରେ ସହର ଓ ଗ୍ରାମଠାରୁ ଦୂରରେ ଜଙ୍ଗଲ ପାଖରେ ଗୁରୁକୁଳ କରି ପିଲାଙ୍କୁ ପାଠ ପଢ଼ାଯାଉଥିଲା । ଏବେ ବି ବିଦ୍ୟାଳୟସବୁ କୋଳାହଳ ପରିବେଶରୁ ଦୂରକୁ ଯିବା ଉଚିତ । ଶାନ୍ତ ପରିବେଶରେ ମନ ଧୀର ଓ ଶରୀର ସୁସ୍ଥ ହୋଇଥାଏ । ସଭାସମିତି, ବିବାହ, ବ୍ରତ ଆଦିରେ ଡାକବାଜି ଯନ୍ତ୍ର ବ୍ୟବହାର କରିବା ବେଆଇନ୍ । ଏ କଥାଟି ଜାଣିବା ଓ ପାଳନ କରିବା ପ୍ରଥମେ ଦରକାର । ସ୍କୁଲ୍, ଡାକ୍ତରଖାନା ଓ ଘରୋଇ ଅଞ୍ଚଳରୁ ଦୂରରେ କଳକାରଖାନା ବସାଯିବା ଉଚିତ । ବ୍ୟସ୍ତ ରାସ୍ତାଗୁଡ଼ିକ ମଧ୍ୟ ଏ ସବୁରୁ ଦୂରରେ ରହିଲେ କୋଳାହଳର ପ୍ରଭାବରୁ ରକ୍ଷା ମିଳିବ ।

## ଜାଣିବା କଥା

| | |
|---|---|
| ସବୁଠାରୁ ଧୀର ଶବ୍ଦ | ନିଶ୍ୱାସ ନେବାର ଶବ୍ଦ |
| ସବୁଠାରୁ ଉଚ୍ଚ ଶବ୍ଦ | ମହାକାଶଯାନ ଉତ୍କ୍ଷେପଣ ଶବ୍ଦ |

# ଲୋକଗହଳି

ପୃଥିବୀରେ ଦିନକୁ ଦିନ ଲୋକଗହଳି ବଢ଼ିଯାଉଛି । ନିତି କୋଟି କୋଟି ପିଲା ଜନ୍ମ ହେଉଛନ୍ତି । କିନ୍ତୁ ସବୁ ଅଞ୍ଚଳରେ ଲୋକଙ୍କ ସଂଖ୍ୟା ବଢ଼ିଯାଉ ନାହିଁ । କାରଣ, ବେଶୀ ଲୋକେ ସହରରେ ରହିବାକୁ ପସନ୍ଦ କରୁଛନ୍ତି । ଫଳରେ ସହରବାସୀଙ୍କ ସଂଖ୍ୟା ଦିନକୁଦିନ ବଢ଼ିଚାଲିଛି । ସହରରେ ରହୁଥିବା ଲୋକଙ୍କ ହିସାବ କଲେ, ଆମ ଦେଶ ଭାରତ ପୃଥିବୀରେ ଚତୁର୍ଥ ସ୍ଥାନ ପାଇବ । ସହରରେ ଲୋକ ବଢ଼ିଯିବା ଅନୁପାତରେ ଘରଦ୍ୱାର ବଢ଼ିପାରେ ନାହିଁ । ଏଣୁ ସହର ଚାରିପଟେ ଓ ମଝିରେ ଥିବା ଖାଲି ଜାଗାରେ ଅସ୍ୱାସ୍ଥ୍ୟକର ବସ୍ତିସବୁ ଗଢ଼ିଉଠେ । ସହରରେ ଯେତେ ଲୋକ ଥାଆନ୍ତି, ତା'ର ଚାରିଭାଗରୁ ଭାଗେ ରହନ୍ତି ବସ୍ତିରେ । ସେମାନେ ଚଳିବା ପାଇଁ ସବୁ ପ୍ରକାରର ସୁବିଧା ଯୋଗାଇ ହୁଏ ନାହିଁ । ପ୍ରକୃତରେ ଗ୍ରାମ ଅପେକ୍ଷା ସହରରେ ସରକାରଙ୍କର ବେଶୀ ଅର୍ଥ ଖର୍ଚ୍ଚ ହୁଏ । କିନ୍ତୁ ବସ୍ତିର ଲୋକେ ଠିକ୍‌ଭାବରେ ଘର, ପିଇବା ପାଣି, ପାଠପଢ଼ା ସୁବିଧା, ଚିକିତ୍ସା ସୁବିଧା କିମ୍ବା ପରିଷ୍କାର ପରିବେଶ ପାଇପାରନ୍ତି ନାହିଁ । ଏହାର କାରଣ, ସହର ପାଇଁ ଯେତେ ସୁବିଧା କରାଯାଏ, ତା' ତୁଳନାରେ ସେଠାର ଲୋକସଂଖ୍ୟା ବଢ଼ିଯାଏ ।

## ବସ୍ତି କେମିତି ବସେ

ସହରଟିଏ ଗଢ଼ା ହେବାବେଳେ ବାହାରୁ ଅନେକ ମୂଲିଆ ମଜୁରିଆ ଆସନ୍ତି । ସେମାନେ ଅନେକ ଦିନ ଅସ୍ଥାୟୀଭାବେ ରହି ସହର ଗଢ଼ନ୍ତି । ତା'ପରେ ସେଇଠି ସେମାନଙ୍କର ସ୍ଥାୟୀ ବସ୍ତି ହୋଇଯାଏ । ନଦୀବନ୍ଧ ଯୋଜନା ଓ କଳକାରଖାନା ତିଆରି ହେବାରୁ ଅନେକ ଲୋକଙ୍କୁ ଭିଟାମାଟି, ଚାଷଜମି ଓ ଜଙ୍ଗଲ-ଆଶ୍ରୟ ଛାଡ଼ିବାକୁ ପଡ଼େ । ସେମାନେ କାମଧନ୍ଦା କରି ଚଳିବାକୁ ସହରକୁ ଚାଲିଆସନ୍ତି । ଅସ୍ଥାୟୀଭାବେ ସହରରେ ସେମାନେ ଯେଉଁଠି ରହିଯାଆନ୍ତି, ତାହା ଗୋଟିଏ ବସ୍ତି ହୋଇଯାଏ । ବସ୍ତିଗୁଡ଼ିକ ବେଆଇନ୍ ଭାବେ ଗଢ଼ିଉଠିଥିବାରୁ

ସେଠାରେ ରାସ୍ତା, ବିଜୁଳି ଆଲୁଅ, ଡାକ୍ତରଖାନା, ସ୍କୁଲ୍ ବା ପାଣିକଳ ଇତ୍ୟାଦି ପାଇଁ ଯୋଜନା ହୋଇ ନ ଥାଏ । ବସ୍ତିର ଅଳିଆ, ଆବର୍ଜନା ରାତିମତ ବାହାର କରିନେବାକୁ କିଛି ସୁବିଧା ନ ଥାଏ । ଏଥିରୁ ଅସ୍ୱାସ୍ଥ୍ୟକର ପରିବେଶ ଗଢ଼ିହୋଇଯାଏ । ବସ୍ତିର ସମସ୍ତେ ନିୟମିତ ରୋଜଗାର ପାଉ ନ ଥିବାରୁ ଚୋରି, ଡକାୟତି ଓ ଅନେକ ଅସାମାଜିକ କାମ ବଢ଼ିଯାଏ । ଏଠି ରୋଗ ବେଶୀ ହୁଏ, ବେଶୀ ଛୋଟ ଛୋଟ ପିଲା ମରନ୍ତି । ଯେଉଁମାନେ ସେଠି ବଞ୍ଚି ବଢ଼ିଥାଆନ୍ତି, ସେମାନେ ଠିକ୍ ଯତ୍ନ ବା ଶିକ୍ଷା ପାଇ ନ ଥାଆନ୍ତି । ଏଣୁ ହୁଏତ ରୋଗା, ଅକ୍ଷମ ବା ଖରାପ ଚରିତ୍ରର ହୋଇପାରନ୍ତି । ଏମାନଙ୍କ ଦ୍ୱାରା ସୁନ୍ଦର ହୋଇ ଗଢ଼ାଯାଇଥିବା ସହରଟିର ସାମାଜିକ ପରିବେଶ ନଷ୍ଟ ହୋଇଥାଏ ।

## ଗାଁ ଉପରେ ପ୍ରଭାବ

ବହୁ କାରଣରୁ ଗାଁରୁ ଲୋକେ ସହରକୁ ଚାଲିଯାଆନ୍ତି । କାରଣ ଗାଁରେ ଯେତିକି ଲୋକ ବଢ଼ୁଛନ୍ତି, ସେତିକି କାମ ମିଳୁ ନାହିଁ । ଗାଁରେ ମିଳୁଥିବା ଜିନିଷପତ୍ରରେ ଆଉ ପରିବାର ଚଳିପାରୁ ନାହିଁ । ଏଣିକି ଗାଁରେ ବେଶୀ ରହିବା ଲୋକେ ହେଲେ ସ୍ତ୍ରୀଲୋକ, ଅକ୍ଷମ ଲୋକ କିମ୍ୱା ଛୋଟପିଲା । ଯିଏ ରହିଯାଆନ୍ତି ସେ ବି ଚଳିବାକୁ ଅସୁବିଧା । କାରଣ ଚାଷଜମି, ଗୋଚର ଜମି ଓ ଜଙ୍ଗଲ ଧୀରେ ଧୀରେ କମିଯାଉଛି । ଏଣୁ ଗାଁ ଲୋକଙ୍କୁ ଅନେକ କଷ୍ଟ ସହିବାକୁ ପଡୁଛି ଓ ପିଲାମାନେ ଠିକ୍ ଯତ୍ନ ପାଇପାରୁ ନାହାନ୍ତି । ସ୍ତ୍ରୀଲୋକମାନେ ଅଣ୍ଟ ପରିଶ୍ରମ କରି କୌଣସିମତେ ଚଳିଯିବାକୁ ଖତ ହେବା ପାଇଁ ଯୋଗ୍ୟ ଦରକାରୀ ଗୋବରକୁ ଘଷି କରି ଜାଳନ୍ତି । କେହି କେହି ବିକନ୍ତି ମଧ୍ୟ । ଜଙ୍ଗଲ ନ ଥିବାରୁ କାଠର ଅଭାବ ଏଥିପାଇଁ ଦାୟୀ । ଘଷି ଜଳିଲେ ବାୟୁମଣ୍ଡଳ ପ୍ରଦୂଷିତ ହୁଏ । ଚାଷପାଇଁ ସାର ଅଭାବ ପଡ଼େ । ଫସଲ ଅମଳ କମ୍ ହୁଏ । ଗାଁ ଲୋକଙ୍କର ଶରୀର ଓ ମନ ଉଭୟ ଅସୁସ୍ଥ ହୁଏ । ମୋଟାମୋଟି ଦେଖିଲେ ସହରୀ ବସ୍ତି ଓ ଗାଁମାନଙ୍କର ଅସୁବିଧା ଗୋଟିଏ ଧରଣର । ତେବେ ଗାଁର ଅଧିକ ଅସୁବିଧାଟି ହେଲା, ଅଧିକାଂଶ ଲୋକଙ୍କର ଜୀବିକା ଗାଁରେ ନ ଥିବାରୁ



ସହରତଳି ବସ୍ତିର ଦୂଷିତ ପରିବେଶ

ଗାଁର ଭଲମନ୍ଦ ବିଷୟରେ କେହି ମୁଣ୍ଡ ଖେଳାନ୍ତି ନାହିଁ । ତେଣୁ ଗାଁର ଉନ୍ନତି ହୋଇପାରେ ନାହିଁ । ଗାଁ ଲୋକଟି ନିଜକୁ ସହରୀ ବାସିନ୍ଦାଙ୍କ ଅପେକ୍ଷା ଛୋଟ ମନେକରେ । ଗାଁର ପ୍ରଧାନ ବେଉସା ଚାଷଟି ଅବହେଳିତ ହେବାରୁ ସାରା ଦେଶରେ ଖାଦ୍ୟର ଅଭାବ ପଡ଼େ ।

## ବସ୍ତିର ଅନ୍ୟ ସୁବିଧା ଅସୁବିଧା

ବସ୍ତି ଅଞ୍ଚଳ ନିଜର ଅଧିବାସୀମାନଙ୍କୁ କୁପରିବେଶ ଦେଇଥାଏ । ଏହି କୁପରିବେଶ ସମଗ୍ର ସହରକୁ ନଷ୍ଟ କରେ । ସେପଟେ ଗାଁର ପରିବେଶ ମଧ ଖରାପ ହୋଇ ଚାଲିଥାଏ । ଏ ସବୁ ପାଇଁ ଦାୟୀ ହେଲା ଜନସଂଖ୍ୟା ବଢ଼ିବା ଓ ନାନା ପ୍ରକାର ଯୋଜନା ତିଆରି ହେବା । କିନ୍ତୁ ଜନସଂଖ୍ୟା ବଢ଼ିବା ଓ ଯୋଜନା ହେବା, ଦୁଇଟିଯାକ ପୂରାପୂରି ଏଡ଼େଇ ହେବ ନାହିଁ ।

ସହର ପାଇଁ ବସ୍ତି ମଧ ଦରକାର । ସେଠାରେ ଧୋବା, ମୋଚି, ପରିବା ଦୋକାନୀ, ଖବରକାଗଜ ବିକାଳି, ଗାଡ଼ିଚାଳକ, ରିକ୍ସାଚାଳକ, ବାରିକ, ମିସ୍ତ୍ରୀ, କାଠ କାରିଗର ଓ ଶ୍ରମିକମାନେ ରହନ୍ତି । ସେମାନେ ନ ଥିଲେ ସହର ଅଚଳ । ତାଙ୍କର ଜୀବିକା ନ ଥିଲେ ଗାଁରେ ଥିବା ତାଙ୍କ ପରିବାରଗୁଡ଼ିକ ଅଚଳ । କିନ୍ତୁ ସେମାନଙ୍କର ବସତି ଗଢ଼ିଉଠିବା ପାଇଁ ଯୋଜନା ନ ଥିଲେ ପରିବେଶ ନଷ୍ଟ ହୁଏ । ବେଳେବେଳେ ସେମାନଙ୍କର ବସ୍ତି ଭାଙ୍ଗିଦେଇ ସେମାନଙ୍କୁ କଷ୍ଟ ଦିଆଯାଏ । ସେମାନେ ନୂଆକରି ଖାଲି ଜାଗା ଦେଖି ପୁଣି ବସ୍ତି ଗଢ଼ନ୍ତି । ଏହାଦ୍ୱାରା ଯେକୌଣସି ମତେ ପରିବେଶ ଦୂଷିତ ହେବାର ହିଁ ହୁଏ ।

ଆଜିକାଲି ପରିବେଶକୁ ଆଖିରେ ରଖି ଉତ୍ତମ ବସ୍ତି ଗଢ଼ିବାକୁ ଓ ପୁରୁଣା ବସ୍ତିଗୁଡ଼ିକର ଉନ୍ନତି କରିବାକୁ ଯୋଜନା ହେଉଛି । ଏହା ସଫଳ ହେଲେ ବସ୍ତି ରହିବ ଓ ପରିବେଶ ମଧ ନିର୍ମଳ ରହିବ । ବଢ଼ିଯାଉଥିବା ଜନସଂଖ୍ୟା ପାଇଁ ଆଶ୍ରୟ ମିଳିବ ।

## କିଛି କଥା ଓ କିଛି ଅନୁମାନ

୧. ପୃଥିବୀରେ ଜନସଂଖ୍ୟା ଯେପରି ବଢୁଛି, ସେହିପରି ଚାଲିଲେ ୨୦୫୦ ମସିହା ବେଳକୁ ଅଧେ ଲୋକଙ୍କର ଘର ନ ଥିବ ।

୨. ପୃଥିବୀର ତିନି ଭାଗରୁ ଭାଗେ ଲୋକ ସମୁଦ୍ରକୂଳ ସମତଳ ଭୂମିରେ ବାସ କରନ୍ତି ।

୩. ଆଇସ୍‌ଲ୍ୟାଣ୍ଡର ରାଜଧାନୀ ର୍‌ୟାକ୍ ଜାଭିକ୍ ପୃଥିବୀର ସବୁଠାରୁ ସଫାସୁତୁରା ସହର ।

୪. ଭାରତର ଅଧିକାଂଶ ସହରରେ କୋଠରି ପିଛା ପାଞ୍ଚଜଣ ରହନ୍ତି ।

୫. ଏସିଆର ସବୁଠାରୁ ବଡ଼ ବସ୍ତି ଅଞ୍ଚଳ ବମ୍ବେରେ ଅଛି ।

୬. ବମ୍ବେର ଫୁଟ୍‌ପାଥ୍‌ରେ ସବୁଦିନ ରାତିରେ ଛ' ଲକ୍ଷ ଲୋକ ଶୋଇଥାଆନ୍ତି ।

# ଆମେ ପରିବେଶକୁ ଭଲପାଉ

ଏ ପୃଥିବୀରେ ଆମ ଆଗରୁ ପରିବେଶ ରହିଛି । ଆମେ ତା' ଭିତରୁ ସୃଷ୍ଟ ଓ ସେ ଆମକୁ ପାଳନ କରୁଛି । ଆମେ ମଧ୍ୟ ତାକୁ ପାଳନ କରିବା ଉଚିତ । ସବୁ ଯୁଗରେ ଭାରତରେ ପରିବେଶକୁ ଆଦର କରାଯାଇ ଆସିଛି । ଜଳ, ବାୟୁ, ମାଟି, ଗଛ ଓ ପଶୁପକ୍ଷୀଙ୍କୁ ଆମ ଦେଶରେ କେବଳ ଆଦର ନୁହେଁ, ପୂଜା ମଧ୍ୟ କରାଯାଏ । ଏହି ଆଦର କମିବା ଦିନଠାରୁ ଆମ ପରିବେଶର କ୍ଷୟ ଆରମ୍ଭ ହୋଇଛି । ପୁରୁଣା ଚିତ୍ର, କାରୁକାର୍ଯ୍ୟ, ପୋଥି, ପୁରାଣ ଓ ଗପଗୁଡ଼ିକରେ ଗଛଲତା, ଜୀବଜନ୍ତୁ ଓ ପାହାଡ଼-ଜଙ୍ଗଲ ଆଦିକୁ ଖୁବ୍ ଆଦରରେ ସ୍ଥାନ ଦିଆଯାଇଛି । ତାଙ୍କୁ ନେଇ ଅନେକ ଶିଖିବାର କଥା କୁହାଯାଇଛି । ଶ୍ରୀକୃଷ୍ଣଙ୍କ ଛବି ସମସ୍ତେ ଦେଖିଥିବେ । ତାଙ୍କ ପାଖରେ ଗଛ, ଫୁଲ, ଗାଈବାଛୁରୀ, ଜଙ୍ଗଲ, ପଡ଼ିଆ, ପୋଖରୀ, ଚଢ଼େଇ ସବୁ ଦେଖାଯାଉଥିବ । ଭାରତରେ ପରିବେଶକୁ ବାଦ୍ ଦେଇ ଭଗବାନଙ୍କୁ ଚିନ୍ତା କରାଯାଇ ନାହିଁ ।

ଆମ ଓଡ଼ିଆ ଘରେ ଫଳନ୍ତି ଗଛକୁ ହାଣିବା ମନା । ତୁଳସୀ, ବେଲପତ୍ର ଆଦି ମନଇଚ୍ଛା ଛିଣ୍ଡାଇବାକୁ ମନା । ଫୁଲର କଢ଼ ତୋଳିନେବା ମନା । ଏହାଦ୍ୱାରା ଗଛ ଓ ତା'ର ବଂଶବୃଦ୍ଧି ନଷ୍ଟ ହୋଇଯିବ ବୋଲି ଏ ସବୁ ବାରଣ କରାଯାଇଛି । ଗାଈଗୋରୁଙ୍କ ପ୍ରତି କଠୋର ହେବା ଓ ପୋଖରୀରେ ଶୌଚ ହେବାକୁ ମଧ୍ୟ ବାରଣ ରହିଛି । ଆମର ପୂର୍ବପୁରୁଷ ପରିବେଶକୁ କେତେ ଭଲ ପାଉଥିଲେ, ଏଥିରୁ ଜଣାପଡ଼େ ।

ଭାରତର ମହାପୁରୁଷ ଗୌତମ ବୁଦ୍ଧ କହିଥିଲେ, "ଗଛ କାଠୁରିଆକୁ ବି ଛାଇ ଦିଏ" । ଏ କଥା ଜାଣିବା ପରେ ଗଛ ହାଣିବାକୁ କାହାର ହାତ ଯିବ କି ? ଆମ ଇତିହାସର ସମ୍ରାଟ ଅଶୋକ ପୃଥିବୀରେ ପ୍ରଥମ କରି ଗଛଲତା ଓ ଜୀବଜନ୍ତୁଙ୍କ ରକ୍ଷା ପାଇଁ ଆଇନ୍ କରିଥିଲେ । ଦେଶସାରା ସେ ଆଇନ୍‌ଗୁଡ଼ିକୁ ପଥର ଖମ୍ଭ ଓ ପାହାଡ଼ ପର୍ବତରେ ଖୋଳି ଲେଖିଦେଇଥିଲେ ।



ଆସମ ଗଛକୁ ଭଲପାଉ

ଯେ ତାହା ମାନୁ ନ ଥିଲା, ତାକୁ ଦଣ୍ଡ ଦେଉଥିଲେ । ବୈଦରାଜ ଧନ୍ୱନ୍ତରି ତାଙ୍କ ଶାସ୍ତ୍ରରେ ଜଳ, ବାୟୁ ଓ ପରିବେଶକୁ ଶୁଦ୍ଧ ରଖିବା ପାଇଁ ଅନେକ ପରାମର୍ଶ ଲେଖିଛନ୍ତି । ପ୍ରାଚୀନ ଭାରତରେ ଚାଣକ୍ୟ ନାମକ ଜଣେ ବଡ଼

ପଣ୍ଡିତ ଥିଲେ । ତାଙ୍କର 'ଅର୍ଥଶାସ୍ତ୍ର' ନାମରେ ଗୋଟିଏ ମୂଲ୍ୟବାନ ବହି ଅଛି । ସେଥିରେ ସହର ପରିଷ୍କାର ରଖିବା, ଜଙ୍ଗଲ ରକ୍ଷା କରିବା ଓ ନୂଆ ଜଙ୍ଗଲ ତିଆରି କରିବା ପାଇଁ ସମାଜକୁ ଦାୟୀ କରାଯାଇଛି । ଅଭୟାରଣ୍ୟ ଓ ବଣଜନ୍ତୁଙ୍କ ସୁରକ୍ଷା କଥା ମଧ୍ୟ ସେଥିରେ ଅଛି । ସେସବୁର ବିରୋଧ କଲେ କି ଦଣ୍ଡ ଦିଆଯିବା ଉଚିତ, ତାହା ମଧ୍ୟ ସେ ଲେଖିଛନ୍ତି ।

ଆମ ଭାରତୀୟମାନଙ୍କର ପରିବେଶ ପ୍ରତି ଦରଦର ତୁଳନା ନାହିଁ । ଗଛ ଓ ଜଙ୍ଗଲକୁ ରକ୍ଷା କରିବାକୁ ପ୍ରାଣବଳୀ ଦେବା ଘଟଣା କେବଳ ଏଇ ଦେଶରେ ଘଟିଛି । ୧୭୩୦ ମସିହାରେ ରାଜସ୍ଥାନର ଖେଜରାଲୀ ଗ୍ରାମରେ ରାଜାଙ୍କ ଜଙ୍ଗଲ କଟା ଅଟକାଇବାକୁ ଯାଇ ଗଛକୁ କୁଣ୍ଢାଇ ଧରିଥିବାରୁ ୩୬୩ ଜଣ ସ୍ତ୍ରୀ-ପୁରୁଷ ହାଣ ଖାଇଥିଲେ । କିନ୍ତୁ ଶେଷରେ ସେହି ଲୋକଙ୍କ କଥା ରହିଲା ଓ କଞ୍ଚା ଗଛ କାଟିବା ସେଠାରେ ନିଷେଧ କରାହେଲା । ୧୯୭୨ ମସିହାରେ ଉତ୍ତରପ୍ରଦେଶର ଘରୱାଲ୍ ଅଞ୍ଚଳରେ ଠିକ୍ ଏମିତି ଉପାୟରେ ଲୋକେ ଜଙ୍ଗଲ କଟାଯିବା ବନ୍ଦ କରାଇଦେଇଥିଲେ । ପୁଣି ୧୯୭୪ ମସିହାରେ କର୍ଣ୍ଣାଟକରେ ଏହିଭଳି ଘଟଣା ଘଟିଥିଲା ।

ଏବେ ପରିବେଶ ସୁରକ୍ଷା ପାଇଁ ଦେଶସାରା ଜନମତ ଗଢ଼ିଉଠୁଛି । ଜଙ୍ଗଲ, ଚାଷଜମି, ଜନବସତି ଇତ୍ୟାଦି ନଷ୍ଟ କରି ନଦୀବନ୍ଧ ଯୋଜନା, କଳକାରଖାନା, ସାମରିକ ଘାଟୀ ଓ ଖଣିଖୋଳା ନ କରାଇଦେବା ପାଇଁ ଚାରିଆଡ଼େ ଆନ୍ଦୋଳନ ହେଉଛି । ଅନେକ ଘଟଣାରେ ଏ ସବୁ ଆନ୍ଦୋଳନ ସଫଳ ମଧ୍ୟ ହେଉଛି । ଏଥିରୁ ଲୋକମାନଙ୍କର ପରିବେଶ ପାଇଁ ଥିବା ଦରଦ ବୁଝାପଡ଼େ ।

ପରିବେଶ ସୁରକ୍ଷା ସପକ୍ଷରେ ମତ ଗଠନ କରିବାରେ ଭାରତ ପୃଥିବୀରେ ଆଗୁଆ ରହିଛି । ରାଷ୍ଟ୍ରମୁଖ୍ୟ ସମ୍ମିଳନୀ, ଜାତିସଂଘ ସଭା, ରାଜ୍ୟଗୋଷ୍ଠୀ ସମ୍ମିଳନୀ, ସବୁଠାରେ ଆମ ଦେଶ ଏ ବିଷୟରେ ସ୍ୱର ଉଠାଇଛି ଓ ସମର୍ଥନ ପାଇଛି । ପ୍ରକୃତରେ ଦେଖିଲେ ପରିବେଶକୁ ଭଲପାଇବା ଓ ରକ୍ଷା କରିବା ଆମ ସଭ୍ୟତାର ଗୋଟିଏ ଗୁଣ । ଏହି ଗୁଣଟିକୁ ନିଜର ଅଭ୍ୟାସ କରି ରଖିବା ନିହାତି ଦରକାର ।

# ପାରିବେଶିକ ପୁଣ୍ୟତିଥି

| | |
|---|---|
| ମା' ଧରିତ୍ରୀ ଦିବସ | ଏପ୍ରିଲ୍, ୨୨ ତାରିଖ |
| ବିଶ୍ୱ ପରିବେଶ ଦିବସ | ଜୁନ୍, ୫ ତାରିଖ |
| ବିଶ୍ୱ ବନ ଦିବସ | ମାର୍ଚ୍ଚ, ୨୧ ତାରିଖ |
| ବନ ମହୋତ୍ସବ ସପ୍ତାହ | ଜୁଲାଇ ୧ ରୁ ୭ ତାରିଖ |
| ବନ୍ୟପ୍ରାଣୀ ସପ୍ତାହ | ଅକ୍ଟୋବର ୨ ରୁ ୮ ତାରିଖ |
| ପରିବେଶ ସଚେତନ ମାସ | ନଭେମ୍ବର ୧୯ ରୁ ଡିସେମ୍ବର ୧୮ ତାରିଖ |
| ଗୋ-ସମ୍ପଦ ପୂଜା | ଗହ୍ମା-ପୂର୍ଣ୍ଣିମା ଓ ଦୋଳ ପୂର୍ଣ୍ଣିମା |
| ମାଟି (ଭୂମି) ପୂଜା | ରଜପର୍ବ |

